# ସର୍ବୋଦୟ

ଗାନ୍ଧୀଜୀ



ପ୍ରକାଶ କରିଛନ୍ତି—
ଉତ୍କଳ ଖାଦୀମଣ୍ଡଳ
କଟକ

ଛାପିଛନ୍ତି—
କଂଗ୍ରେସ ପ୍ରେସ
କଟକ

ପ୍ରଚ୍ଛଦପଟ୍ଟ ଅଙ୍କିଛନ୍ତି—
ଶ୍ରୀ ବିଭୂତିଭୂଷଣ କାନୁନଗୋ
କଟକ

ପ୍ରଥମ ସଂସ୍କରଣ
ମଇ, ୧୯୪୯, ଛାପା—୨୦୦୦

ଦ୍ୱିତୀୟ ସଂସ୍କରଣ
ଡିସେମ୍ବର, ୧୯୫୪, ଛାପା—୫୦୦୦

ମୂଲ୍ୟ—୫୦। ଗୃହଅଣା ମାତ୍ର

# ପ୍ରସ୍ତାବନା

ପାଶ୍ଚାତ୍ୟ ଦେଶମାନଙ୍କ ମଧ୍ୟରେ ସାଧାରଣତଃ ଏହି କଥା ବିଶ୍ୱାସ କରାଯାଇଥାଏ ଯେ ବହୁସଂଖ୍ୟକ ଲୋକଙ୍କର ସୁଖ ଓ ତାଙ୍କର ଅଭ୍ୟୁଦୟ ବଢାଇବା ମଣିଷର କର୍ତ୍ତବ୍ୟ । ସୁଖର ଅର୍ଥ କେବଳ ଶାରିରିକସୁଖ, ଟଙ୍କା ପଇସାର ସୁଖ, କରାଯାଇଥାଏ । ଏଭଳି ସୁଖ ଲାଭ ପାଇଁ ନୀତିର ନିୟମ ଭାଙ୍ଗିବାକୁ ପଡ଼ିଲେ ସେଥିକି ବିଶେଷ ଖାତିର କରାଯାଏ ନାହିଁ । ଏଭଳି ଅଧିକ ସଂଖ୍ୟକଙ୍କୁ ସୁଖ ଦେବାର ଉଦ୍ଦେଶ୍ୟ ପୋଷଣ କରୁଥିବାରୁ ପାଶ୍ଚାତ୍ୟ ଲୋକେ ଅଳ୍ପ ଲୋକଙ୍କୁ ଦୁଃଖ ଦେଇ ମଧ୍ୟ ଅଧିକ ଲୋକଙ୍କୁ ସୁଖ ଦିଆଯିବାଟା କିଛି ମନ୍ଦ ବୋଲି ବିଚାରନ୍ତି ନାହିଁ । ଏହାର ଫଳ ଆମେ ପାଶ୍ଚାତ୍ୟ ଦେଶମାନଙ୍କରେ ଦେଖୁଛୁଁ ।

କିନ୍ତୁ ପାଶ୍ଚାତ୍ୟର ଅନେକ ବିଚାରବାନ ଲୋକଙ୍କର ମତ ଯେ କେବଳ ବହୁସଂଖ୍ୟକ ଲୋକଙ୍କର ଶାରିରିକ ଓ ଆର୍ଥିକ ସୁଖ ପାଇଁ ଚେଷ୍ଟା କରିବା ଈଶ୍ୱରଙ୍କର ନିୟମ ନୁହେଁ ଓ କେବଳ ସେତିକି ପାଇଁ ଯତ୍ନ କରିବା ଓ ସେଥିରେ ନୈତିକ ନିୟମ ଭଙ୍ଗ କରିବା ତ ତାହା ଈଶ୍ୱରୀୟ ନିୟମର ବିରୁଦ୍ଧାଚରଣ ହେବ । ଏଭଳି ଲୋକମାନଙ୍କ ଭିତରେ ବିଦ୍ୱାନ ଇଂରେଜ ସ୍ୱର୍ଗୀୟ ଜନ୍ ରସ୍କିନ ପ୍ରଧାନ ଥିଲେ । କଳା, ଶିଳ୍ପବିଦ୍ୟା ଆଦି ବିଷୟରେ ସେ ଅନେକ ଭଲ ବହି ଲେଖିଛନ୍ତି । ନୈତିକତା ବିଷୟରେ ମଧ୍ୟ ସେ

ଅନେକ ଲେଖିଛନ୍ତି । ତା ଭିତରୁ ଖଣ୍ଡେ ଶ୍ରେଷ୍ଠ ବହି ହେଉଛି 'ଅନ୍ ଟୁ ଦସ୍ ଲଷ୍ଟ,' । ଏହାକୁ ସେ ନିଜର ସର୍ବ ଶ୍ରେଷ୍ଠ ରଚନା ମନେ କରନ୍ତି । ଯେଉଁଠି ଇଂରେଜୀ ଚଳେ ସେ ସବୁଠିଁ ଏ ବହିର ବହୁତ ପ୍ରଚୁର ହୋଇଛି । ଏଥିରେ ଉପରୋକ୍ତ ବର୍ଗର ଧାରଣା ଜୋର୍‌ର ସହିତ ଖଣ୍ଡନ କରାଯାଇଛି ଓ ଏହା ଦର୍ଶାଯାଇଛି ଯେ ନୈତିକ ନିୟମମାନଙ୍କର ପାଳନରେହିଁ ମନୁଷ୍ୟ ଜାତିର କଲ୍ୟାଣ ରହିଛି ।

ଆଜିକାଲି ଭାରତରେ ଆମେ ପାଶ୍ଚାତ୍ୟ ଲୋକଙ୍କର ଖୁବ୍ ଅନୁକରଣ କରୁଛୁଁ । କେତେକ କଥାରେ ଏହା ଆମେ ଆବଶ୍ୟକ ମଣିଥାଉଁ କିନ୍ତୁ ଏଥିରେ ସନ୍ଦେହ ନାହିଁ ଯେ ପଶ୍ଚିମର ବହୁତ ରୀତିନୀତି ଖରାପ ଓ ଏହାତ ସମସ୍ତେ ସ୍ୱୀକାର କରିବେ ଯେ, ଯାହା ଖରାପ ତା'ଠୁଁ ଦୂରରେ ରହିବା ଉଚିତ ।

ଦକ୍ଷିଣ ଆଫ୍ରିକାରେ ଭାରତୀୟଙ୍କର ଅବସ୍ଥା ଅତ୍ୟନ୍ତ କରୁଣ । ଆମେ ଧନ ପାଇଁ ବିଦେଶକୁ ଯାଉଛୁଁ ଓ ତାର ନିଶାରେ ନୀତିକୁ, ଈଶ୍ୱରଙ୍କୁ ଭୁଲି ଯାଉଛୁଁ । ସ୍ୱାର୍ଥରେ ବୁଡ଼ି ଯାଉଛୁଁ । ଏହାର ପରିଣାମ ହେଉଛି ଯେ, ବିଦେଶରେ ରହିବା ଦ୍ୱାରା ଆମର ଲାଭ ପରିବର୍ତ୍ତେ ବହୁତ କ୍ଷତି ହେଉଛି ଅଥବା ବିଦେଶ ଯିବାର ପୂରାପୂରି ଲାଭ ମିଳୁନାହିଁ । ସବୁ ଧର୍ମରେ ନୀତିର ଅଂଶ ତ ଥାଏ; କିନ୍ତୁ ସାଧାରଣ ବୁଦ୍ଧିରେ ବିଚାରିଲେ ବି ନୀତିର ପାଳନ ଆବଶ୍ୟକ । ଏଇଥିରେ ହିଁ ସୁଖ ଅଛି ବୋଲି ଜନ୍ ରସ୍‌କିନ୍ ସିଦ୍ଧାନ୍ତ କରିଛନ୍ତି । ସେ ପାଶ୍ଚାତ୍ୟ ଲୋକଙ୍କର ଆଖି ଖୋଲି ଦେଇଛନ୍ତି ଓ ଆଜି ୟୁରୋପ ଓ ଆମେରିକାରେ ବି ଅନେକ ଲୋକ ତାଙ୍କ ଶିକ୍ଷା ଅନୁସାରେ ଚଳୁଛନ୍ତି । ଭାରତୀୟ ଜନସାଧାରଣ ବି ସେ ବହିରୁ

ଲାଭ ହେଉଥାନ୍ତୁ । ଏହି ଉଦ୍ଦେଶ୍ୟରେ ଆମେ ସେ ବହିର ସାରାଂଶ ଏଭଳି ଢଙ୍ଗରେ ଦେବାକୁ ଚାହୁଁଛୁ, ଯେପରିକି ଇଂରେଜୀ ନଜାଣିଥିବା ଲୋକେ ବି ତାହା ବୁଝି ପାରିବେ । ମଣିଷ କ'ଣ କରିବା ଉଚିତ ତାହା ସୁକରାତ୍ତ (ସକ୍ରେଟିସ୍)ସଂକ୍ଷେପରେ ବୁଝାଇ-ଛନ୍ତି । ସେ ଯାହା କହିଛନ୍ତି ତାହାକୁହିଁ ରସ୍କିନ୍ ବିସ୍ତୃତ କରିଛନ୍ତି ବୋଲି କୁହାଯାଇ ପାରେ । ରସ୍କିନ୍ଙ୍କର ବିଚାରଧାରା ସୁକରାତଙ୍କର ବିଚାରଧାରାର ବିସ୍ତୃତ ରୂପ । ସୁକରାତଙ୍କ ବିଚାର ଅନୁସାରେ ଚାଲିବାକୁ ଇଚ୍ଛୁକ ଲୋକଙ୍କର ବିଭିନ୍ନ ବ୍ୟବସାୟରେ କିଭଳି ଆଚରଣ କରିବା ଉଚିତ୍, ତାହା ରସ୍କିନ୍ ଖୁବ୍ ଭଲ ଭାବରେ ବତେଇ ଦେଇଛନ୍ତି । ଆମେ ତାଙ୍କ ବହିର ସାରାଂଶ ଦେଉଛୁଁ, ଅନୁବାଦ କରୁନାହୁଁ । ଅନୁବାଦ କରିଦେଲେ ବାଇବେଲ୍ ଆଦି ଅନେକ ଗ୍ରନ୍ଥରୁ ଦିଆଯାଇଥିବା ଦୃଷ୍ଟାନ୍ତ ପାଠକ ବୁଝିପାରିବା ଅସମ୍ଭବ ହେବ । ଆମେ ବହିର ନାମର ମଧ୍ୟ ଅନୁବାଦ କରିନାହୁଁ । କାରଣ ଯେ ଇଂରେଜୀରେ ବାଇବେଲ୍ ପଢିଥିବେ ସେହି କେବଳ ତାର ଅର୍ଥ ବୁଝି ପାରିବେ ମାତ୍ର ତାହା ଲେଖା ହେବାର ଉଦ୍ଦେଶ୍ୟ ସମସ୍ତଙ୍କର କଲ୍ୟାଣ, ସମସ୍ତଙ୍କର (କେବଳ ଅଧିକାଂଶଙ୍କର ନୁହେଁ) ଉଦୟ, ଉତ୍କର୍ଷ, ହୋଇଥିବାରୁ ଆମେ ଏହାର ନାମ ଦେଲୁ "ସର୍ବୋଦୟ" ।

ମୋ: କ: ଗାନ୍ଧୀ

# ସର୍ବୋଦୟ

(୧)

## ସତତାର ମୂଳ

ମଣିଷ କେତେ ପ୍ରକାରର ଭୁଲ କରିଥାଏ କିନ୍ତୁ ମଣିଷର ପାରସ୍ପରିକ ଭାବନା—ସ୍ନେହ, ସହାନୁଭୂତିର ପ୍ରଭାବକୁ ଖାତିର ନ କରି ତାଙ୍କୁ ଗୋଟାଏ ପ୍ରକାରର 'ଯନ୍ତ୍ର ବୋଲି ଧରି ନେଇ ତାଙ୍କର କାରବାର ଗଢ଼ିବାଠାରୁ ବଳି ବଡ଼ ଭୁଲ ଆଉ କିଛି ଥିବାର ଦେଖା ଯାଉନାହିଁ । ଏଭଳି ଭୁଲ ଆମ ପକ୍ଷରେ ଲଜ୍ଜାଜନକ ବୋଲି କୁହାଯାଇପାରେ । ଅନ୍ୟ ଭୁଲରେ ଯେମିତି ଉପରୁ ଦେଖିଲେ ଟିକିଏ ସତ୍ୟର ଆଭାସ ଥିବାର ଦେଖାଯାଏ, ଲୌକିକ ନିୟମ ସମ୍ବନ୍ଧରେ ମଧ୍ୟ ସେମିତି ଦେଖାଯାଇଥାଏ । ଲୌକିକ ନିୟମ ଗଢ଼ିବା ଲୋକେ କହନ୍ତି "ପାରସ୍ପରିକ ସ୍ନେହ ଓ ସହାନୁଭୂତି ତ ଗୋଟାଏ ଆକସ୍ମିକ ବସ୍ତୁ ଓ ଏଭଳି ଭାବନା ମଣିଷର ପ୍ରକୃତିର ଗତିରେ ବାଧା ଦିଏ ବୋଲି ହିଁ ଧରିବା ଉଚିତ ମାତ୍ର ଲୋଭ ଓ ଉନ୍ନତି କରିବା ଇଚ୍ଛା, ଏ ଦୁହେଁ ସ୍ଥାୟୀ ପ୍ରବୃତ୍ତି । ସେଥିଯୋଗୁଁ ଆକସ୍ମିକ ଜିନିଷଠୁ ମଣିଷକୁ ଦୂରରେ ରଖି ତାକୁ ଏକ ପଇସା ସଂଗ୍ରହ କରିବା ଯନ୍ତ୍ର ବୋଲି

ମଣି, କେବଳ ଏହି କଥା ବିଚାରିବା ଉଚିତ ଯେ କିପରି ପରିଶ୍ରମ ଓ କି ଧରଣର ଦେଣନେଣର ଆୟରୁ ମଣିଷ ସବୁଠାରୁ ବେଶୀ ଧନ ସଂଗ୍ରହ କରିପାରିବେ । ଏଭଳି ବିଚାରଧାରାକୁ ଭିତ୍ତିକରି ଆଚରଣର ନୀତି ନିର୍ଣ୍ଣୟ କରିଦେବା ପରେ ତେଣିକି ଯେତେ ଇଚ୍ଛା ପରସ୍ପର ସ୍ନେହ ସହାନୁଭୂତିର ସହିତ ମଣିଷ ସମାଜର କାରବାର ଚଲାଯାଉ ।”

ଯଦି ପରସ୍ପର ସ୍ନେହ ସହାନୁଭୂତିର ବଳ ଦେଣନେଣର ନିୟମ ଭଳି ହିଁ ହୋଇଥାନ୍ତା ତ ଉପରୋକ୍ତ ଯୁକ୍ତି ଠିକ୍ ବୋଲି କୁହାଯାଇ ପାରନ୍ତା । ମଣିଷର ଭାବନା ହେଉଛି ତାର ଭିତରର ଶକ୍ତି ଓ ଦେଣନେଣର ନିୟମ ତ ଗୋଟାଏ ସାଂସାରିକ ନିୟମ । ଅର୍ଥାତ୍ ଏ ଦୁହେଁ ଗୋଟାଏ ପ୍ରକାରର, ଗୋଟାଏ ଶ୍ରେଣୀର ନୁହନ୍ତି । ଯଦି ଗୋଟାଏ କୌଣସି ବସ୍ତୁ କୌଣସି ଦିଗରେ ଯାଉଥିବ ଓ ତା ଉପରେ ଗୋଟାଏ ଆଡୁ ଗୋଟାଏ ସ୍ଥାୟୀ ଶକ୍ତି ଓ ଅନ୍ୟ ଏକ ଆଡୁ ଏକ ଆକସ୍ମିକ ଶକ୍ତି କାମ କରୁଥିବ, ତେବେ ଆମେ ପ୍ରଥମେ ସ୍ଥାୟୀ ଶକ୍ତିର ପରିମାଣ ହିସାବ କରିବା ଓ ତା'ପରେ ଆକସ୍ମିକର କରିବା । ଦୁଇଟିଯାକ ହିସାବକୁ ମିଳେଇ ଆମେ ସେ ବସ୍ତୁର ଗତି ନିଶ୍ଚିତ କରି ଜାଣି ପାରିବା । ଆକସ୍ମିକ ଓ ସ୍ଥାୟୀ ଶକ୍ତି ଉଭୟ ଏକା ପ୍ରକାରର ହୋଇଥିବାରୁ ଆମେ ଏ କଥା କରିପାରିବା; ମାତ୍ର ମଣିଷ ସମାଜର କାରବାରରେ ଦେଣନେଣର ସ୍ଥାୟୀ ନିୟମର ଶକ୍ତି ଓ ପାରସ୍ପରିକ ଭାବନାରୂପୀ ଆଧ୍ୟାତ୍ମିକ ଶକ୍ତି ଏ ଦୁହେଁ ଭିନ୍ନ ଭିନ୍ନ ପ୍ରକାରର । ଭାବନାର ପ୍ରଭାବ ଭିନ୍ନ ପ୍ରକାରରେ, ଭିନ୍ନ ଢଙ୍ଗରେ ହିଁ ପଡ଼ିଥାଏ । ଯାହା ଫଳରେ ମଣିଷର ରୂପ ହିଁ ବଦଳି ଯାଏ । ଏସଥି ଯୋଗୁଁ ବସ୍ତୁ ବିଶେଷର ଗତି ଉପରେ କାମ କରୁଥିବା

ଭିନ୍ନ ଭିନ୍ନ ଶକ୍ତିର ପ୍ରଭାବର ହିସାବ ଆମେ ଯେମିତି ସାଧାରଣ ମିଶାଣ ଫେଡ଼ାଣର ନିୟମ ଅନୁସାରେ କରୁଁ, ଭାବନାର ପ୍ରଭାବର ହିସାବ ସେ ଭଳି ଭାବରେ କରିପାରିବା ନାହିଁ । ମଣିଷର ଭାବନାର ପ୍ରଭାବକୁ ଯାଞ୍ଚ କରିବା ବେଳେ ଦେଣନେଣ ଖରିଦ ବିକ୍ରି ବା ଗୃହିତା ଓ ଯୋଗାଣର ନିୟମର ଜ୍ଞାନ କିଛି କାମ ଦିଏ ନାହିଁ ।

ଲୌକିକ ଶାସ୍ତ୍ରର ନିୟମ ଭୁଲ ବୋଲି କହିବାର କିଛି କାରଣ ନାହିଁ । ଯଦି ଜଣେ ବ୍ୟାୟାମ ଶିକ୍ଷକ ଏ କଥା ଧରି ନିଅନ୍ତି ଯେ ମଣିଷ ଦେହରେ କେବଳ ମାଂସପେଶୀ ଅଛି ଅସ୍ଥି ପଞ୍ଜର ନାହିଁ ଓ ପୁଣି ସେହି ଅନୁସାରେ ନିୟମ ଗଢ଼ନ୍ତି, ତେବେ ତାଙ୍କ ନିୟମ ଠିକ୍ ହୋଇପାରେ କିନ୍ତୁ ଅସ୍ଥି ପଞ୍ଜର ଥିବା ମଣିଷ ପ୍ରତି ତାହା ଖାଟିବ ନାହିଁ । ଯଦି କେହି ବ୍ୟାୟାମ ବୀର ଏ କଥା କହିବ ଯେ ମଣିଷର ମାଂସକୁ ଅଲଗା କରି କାଢ଼ି ସେଥିରେ ପେଣ୍ଡୁ ତିଆରି କରିହେବ, ତାକୁ ଓଟାରି ସେଥିରେ ରସି ତିଆରି କରି ହେବ ଓ ପୁଣି ଏ କଥା ବି କହିବ ଯେ ସେ ମାଂସରେ ପୁଣି ଅସ୍ଥି ପଞ୍ଜର ଯୋଡ଼ି ଦେବାର କଠିନ କଥା କଣ ଅଛି ତେବେ ଆମେ ତାକୁ ନିଶ୍ଚୟ ପାଗଳ କହିବା ; କାରଣ ଅସ୍ଥି ପଞ୍ଜରରୁ ମାଂସପେଶୀକୁ ଅଲଗା କରି ବ୍ୟାୟାମର ନିୟମ ଗଢି ହେବ ନାହିଁ । ସେହିଭଳି ମଣିଷର ମନର ଭାବନାକୁ ଉପେକ୍ଷା କରି ଲୌକିକ ଶାସ୍ତ୍ରର ନିୟମ ଗଢ଼ିବା ତ ତାହା ବି ମଣିଷ ପକ୍ଷରେ ସେମିତି ଅକାମୀ ହେବ । ତଥାପି ବର୍ତ୍ତମାନ ଲୌକିକ କାରବାରର ନିୟମର ରଚୟିତାମାନେ ଉପରୋକ୍ତ ବ୍ୟାୟାମ ଶିକ୍ଷକ ଭଳି ହିଁ କାମ କରୁଛନ୍ତି । ସେମାନଙ୍କ

ହିସାବରେ ମଣିଷ, ତାର ଦେହ କେବଳ ଗୋଟାଏ ଯନ୍ତ୍ର ଓ ସେହି ଧାରଣା ଅନୁସାରେ ସେ ନିୟମ ଗଢ଼ନ୍ତି । ସେମାନେ ଜାଣନ୍ତି ଯେ ତା ଭିତରେ ଜୀବନ ଅଛି ତଥାପି ସେ ସେ କଥା ବିଚାରକୁ ଆଣନ୍ତି ନାହିଁ । ଏଭଳି ନିୟମ ମଣିଷ ପ୍ରତି, ଯାହାଠେଇଁ ଜୀବ ବା ଆତ୍ମାର ହିଁ ପ୍ରାଧାନ୍ୟ ରହିଛି କେମିତି ଖାଟିବ ?

ଅର୍ଥଶାସ୍ତ୍ର ଗୋଟାଏ ବିଜ୍ଞାନ ହିଁ ନୁହେଁ । ଯେବେ ଯେବେ ଧର୍ମଘଟ ହୁଏ ସେବେ ସେବେ ଆମେ ତାହା ଅକାମୀ ହେଉଥିବାର ପ୍ରତ୍ୟକ୍ଷ ଦେଖିବାକୁ ପାଉଁ । ସେତେବେଳେ ମାଲିକଙ୍କ ମନ ଗୋଟାଏ ଆଡେ ଯାଏ ତ ଶ୍ରମିକଙ୍କର ଆଉ ଆଡେ । ସେତେବେଳେ ଆମେ ଦେଣନେଣର ଗୋଟାଏ ହେଲେ ନିୟମ ଲଗେଇ କରିପାରୁ ନାହିଁ । ଲୋକେ ଏକଥା ଦର୍ଶାଇବାକୁ ଖୁବ୍ ମୁଣ୍ଡ ଖେଳେଇଥାନ୍ତି ଯେ ମାଲିକ ଓ ଶ୍ରମିକଙ୍କର ସ୍ୱାର୍ଥ ଏକା ଦିଗରେ ହିଁ ରହିଛି, କିନ୍ତୁ ସେମାନେ ଏ ବିଷୟରେ ଜାଣନ୍ତି ନାହିଁ । ଏ କଥା ସତ ଯେ ଉଭୟଙ୍କର ସାଂସାରିକ ସ୍ୱାର୍ଥ, ପଇସାର ସ୍ୱାର୍ଥ ଏକ ନ ହୋଇଥିଲେ ଯେ, ସେମାନେ ପରସ୍ପରର ବିରୋଧୀ ହେବେ ବା ହୋଇ ରହି-ଥିବେ ଏମିତି କିଛି କଥା ନାହିଁ । ଜଣକ ଘରେ ଭାତ ଅଭାବ ପଡ଼ିଛି, ଘରେ ମା ଓ ତାର ପିଲା ଅଛନ୍ତି । ଉଭୟଙ୍କୁ ଭୋକ କରୁଛି । ଖାଇବାରେ ଏ ଦୁହିଁଙ୍କର, ମା ଓ ପିଲାଙ୍କର ସ୍ୱାର୍ଥ ବିରୋଧୀ । ମା ଖାଇଲେ ପିଲାଏ ଉପାସରେ ମରିବେ ପିଲାଏ ଖାଇଲେ ମା ଉପାସ ରହିବ । କିନ୍ତୁ ତଥାପି ମା ଓ ପିଲାଙ୍କ ଭିତରେ କୌଣସି ବିରୋଧ ନାହିଁ । ମା ପାଖରେ ବେଶୀ ବଳ ଅଛି ବୋଲି ସେ ଭାତ ଗଣ୍ଡାକ ନିଜେ ଖାଇଦିଏ ନାହିଁ । ମଣିଷ ଭିତରେ ପରସ୍ପର ସମ୍ପର୍କର ନିୟମ ବିଷୟରେ ବି ଠିକ ଏହି କଥା ।

ତଥାପି କିଛି ସମୟ ପାଇଁ ଧରି ନିଅନ୍ତୁ ଯେ ମଣିଷ ଓ ପଶୁ ଭିତରେ କୌଣସି ଫରକ ନାହିଁ । ଆମେ ପଶୁ ଭଳି ନିଜ ନିଜ ସ୍ୱାର୍ଥ ପାଇଁ ଲଢିବା ଉଚିତ । ତଥାପି ଏକଥା କେବେ ଏକ ନିୟମ ଭଳି କହିଦେଇ ହେବ ନାହିଁ ଯେ, ମାଲିକ ଓ ଶ୍ରମିକ ଭିତରେ ସର୍ବଦା ମତଭେଦ ରହିବହିଁ ରହିବ ବା କଦାପି ରହିବ ନାହିଁ । ଅବସ୍ଥା ଅନୁସାରେ ଏ ମନୋଭାବରେ ପରିବର୍ତ୍ତନ ହୋଇଥାଏ । ଯଥା—ଭଲ କାମ ହେବାରେ ଓ ପୂରା ଦାମ୍ ମିଳିବାରେ ଉଭୟଙ୍କ ସ୍ୱାର୍ଥ ରହିଛି, କିନ୍ତୁ ଲାଭଧନ ବଣ୍ଟା ହେବା ଦୃଷ୍ଟିରୁ ଦେଖିଲେ ହୁଏତ ଦେଖାଯିବ ଯେ ଯେଉଁଠି ଜଣକର ଲାଭ ସେଠି ଅନ୍ୟର କ୍ଷତି । ଯେଉଁଥିରେ ଶ୍ରମିକ ଅଳସ ଓ ନିରୁତ୍ସାହିତ ହେବ ସେଭଳି କମ୍ ଦରମା ଦେବାଦ୍ୱାରା ମାଲିକର ସ୍ୱାର୍ଥ ସିଦ୍ଧି ହେବ ନାହିଁ । ସେହିଭଳି କାରଖାନା ଭଲରୂପେ ନ ଚଳି ପାରୁଥିଲେ ବି ବେଶୀ ଦରମା ଦାବୀ କରିବା ଶ୍ରମିକର ସ୍ୱାର୍ଥର ଅନୁକୂଳ ନୁହେଁ ମାଲିକ ପାଖରେ ତାର କଳ ମରାମତି କରିବାକୁ ବି ପଇସା ଯେତେବେଳେ ନ ଥିବ ସେତେବେଳେ ଚଢ଼ା ଦରମା ଦାବୀ କରିବା ସ୍ପଷ୍ଟତଃ ଅନୁଚିତ ହେବ ।

ଏହିରୂପେ ଆମେ ଦେଖୁଛୁ ଯେ ଦେଣନେଣର ନିୟମକୁ ଭିତ୍ତି କରି କୌଣସି ବିଜ୍ଞାନ ଗଢ଼ି ହେବ ନାହିଁ । ଈଶ୍ୱରୀୟ ନିୟମ ହିଁ ହେଉଛି ଯେ ଧନ ବଢ଼ିବା କମିବାର ନିୟମ ଅନୁସାରେ ମଣିଷର କାରବାର ଚଳିପାରିବ ନାହିଁ । ନ୍ୟାୟର ନିୟମ ହେଉଛି ତାହାର ଭିତ୍ତି । ସେଥିଯୋଗୁଁ ମଣିଷ ବେଳ ଦେଖି ମାତିବା ଅମିତ ଯେଉଁଥିରେ ହେଉ ଆପଣା କାମ ହାସଲ କରିନେବା ଚିନ୍ତା ବିଲ୍ କୁଲ୍ ତ୍ୟାଗ କରିଦେବା ଉଚିତ । ଅମୁକ ପ୍ରକାରର

ଆଚରଣର ଶେଷ ପରିଣାମ କ'ଣ ହେବ ତାହା ସବୁବେଳେ କେହି କହି ପାରିବ ନାହିଁ; କିନ୍ତୁ ଅମୁକ କାମଟା ନ୍ୟାୟ ସଙ୍ଗତ କି ନୁହେଁ ତାହା ଆମେ ପ୍ରାୟ ସବୁବେଳେ ଜାଣିପାରୁଁ । ଆମେ ଏ କଥା ବି କହି ପାରୁଁ ଯେ ନୀତି ମାର୍ଗରେ ଚାଲିବାର ପରିଣାମ ସର୍ବଦା ଭଲହିଁ ହେବ । ହଁ, ସେ ଫଳ କ'ଣ ହେବ, କିପରି ମିଳିବ, ତାହା ଆମେ କହି ପାରିବା ନାହିଁ ।

ନୀତି-ନ୍ୟାୟର ନିୟମରେ ପାରସ୍ପରିକ ସ୍ନେହ ସହାନୁଭୂତିର ସମାବେଶ ହୋଇଯାଏ ଓ ଏହି ଭାବନା ଉପରେହିଁ ମାଲିକ ଶ୍ରମିକଙ୍କର ସମ୍ବନ୍ଧର ମୂଳଦୁଆ ରହିଛି । ଧରନ୍ତୁ, ମାଲିକ ଚାକର-ଙ୍କଠୁଁ ଯଥାସମ୍ଭବ ବେଶୀ କାମ ଆଦାୟ କରିବାକୁ ଚାହେଁ । ତାଙ୍କୁ ଟିକିଏ ହେଲେ ବିଶ୍ରାମ ଦିଏ ନାହିଁ, କମ ଦରମା ଦିଏ, ଗୁହାଳ ଭଳି ଘରେ ରଖେ । ମୋଟ ଉପରେ ଯେତିକିରେ କେବଳ ସେମାନଙ୍କର ଦେହରେ ପ୍ରାଣ ତିଷ୍ଠି ରହିବ ସେତିକି ମାତ୍ର ସେ ତାଙ୍କୁ ଦିଏ । କେତେକ ଲୋକ କହନ୍ତି ଯେ, ଯା'ଦ୍ୱାରା ସେ କିଛି ଅନ୍ୟାୟ କରେ ନାହିଁ । ନିର୍ଦ୍ଦିଷ୍ଟ ଦରମା ପରିବର୍ତ୍ତରେ ଚାକର ତାର ସମସ୍ତ ସମୟ ମାଲିକକୁ ଦେଇ ଦେଇଛି ଓ ମାଲିକ ତାଠୁଁ କାମ ନେଉଛି । କେତେଦୂର କଡ଼ା କାମ ଆଦାୟ କରିବାକୁ ହେବ ତାହା ସେ ଅନ୍ୟ ମାଲିକ ମାନଙ୍କୁ ଦେଖି ଠିକ୍ କରୁଛି । ଚାକରକୁ ଅନ୍ୟଠିଁ ବେଶୀ ଦରମା ମିଳିବ ତ ସେ ସେଠି ଚାକରି କରିବାକୁ ସ୍ୱାଧୀନ । ଦେଣନେଣର ନିୟମ ଗଢ଼ିବା ଲୋକେ ଏହାକୁହିଁ ଅର୍ଥଶାସ୍ତ୍ର କହନ୍ତି ଓ ସେମାନେ କହନ୍ତି ଯେ, ଏଭଳି ଯଥାସମ୍ଭବ କମ୍ ଦରମାରେ ଯଥାସମ୍ଭବ ବେଶୀ କାମ ନେବାଦ୍ୱାରା ମାଲିକର ଲାଭ ହୁଏ ଓ ଶେଷକୁ ଏହାଦ୍ୱାରା ଚାକରର ବି ଲାଭହିଁ ହୋଇଥାଏ ।

ବିଗ୍ଭର କଲେ ଆମେ ଦେଖି ପାରିବା ଯେ ଏହା ଠିକ୍ ନୁହେଁ । ଯଦି ଗ୍ଭକର ଗୋଟାଏ ମେସିନ୍ ବା କଳ ହୋଇଥାନ୍ତା ଓ ତାକୁ ଚଳେଇବାକୁ ଗୋଟାଏ କୌଣସି ବିଶେଷପ୍ରକାର ଶକ୍ତିହିଁ ଲୋଡ଼ା ହେଉଥାନ୍ତା ତ ଏ ହିସାବ ଠିକ୍ ହୁଅନ୍ତା; କିନ୍ତୁ ଏଠି ତ ଗ୍ଭକରକୁ ପରିଗ୍ଭଳିତ କରୁଥିବା ଶକ୍ତି ହେଉଛି ତାର ଆତ୍ମା । ଆଜି, ଆତ୍ମାର ବଳ ତ ଅର୍ଥଶାସ୍ତ୍ରୀମାନଙ୍କର ସବୁ ନିୟମ ଅଚଳ କରିଦିଏ— ସେ ସବୁକୁ ଭୁଲ ସାବ୍ୟସ୍ତ କରିଦିଏ । ମଣିଷରୂପୀ ମେସିନ୍‌ରେ ଧନରୂପୀ କୋଇଲା ଢାଳି ଅଧିକରୁ ଅଧିକ କାମ ଆଦାୟ କରିହେବ ନାହିଁ । ତାର ସହାନୁଭୂତି ଜାଗ୍ରତ କରି ପାରିଲେ ଯାଇଁ ସେ ଭଲ କାମ ଦେବ । ଶ୍ରମିକ ଓ ମାଲିକ ଭିତରେ ଧନର ନୁହେଁ, ପ୍ରୀତିର ବନ୍ଧନ ରହିବା ବାଞ୍ଛନୀୟ ।

ପ୍ରାୟ ଦେଖାଯାଇଥାଏ ଯେ ମାଲିକ ଗ୍ଭଲାକ ଓ ହୁସିଆର ହୋଇଥିଲେ ଶ୍ରମିକ ବେଶୀ ଗ୍ଭପ ଯୋଗୁଁ ବେଶୀ କାମ କରିଥାଏ । ସେମିତି, ମାଲିକ ଅଳସ ଓ ଦୁର୍ବଳ ହୋଇଥିଲେ ଶ୍ରମିକର କାମ ଯେତେ ହେବା କଥା ସେତେ ହୁଏ ନାହିଁ । କିନ୍ତୁ ସଚ୍ଚା ନିୟମ ତ ହେଉଛି ଯେ, ଦୁଇଜଣ ସମାନ ଗ୍ଭଲାକ ମାଲିକଙ୍କୁ ଓ ସମାନ ଗ୍ଭକରଙ୍କୁ ମଧ୍ୟ ନିଆଗଲେ ଦେଖାଯିବ ଯେ, ସହାନୁଭୂତିଶୀଳ ମାଲିକର ଗ୍ଭକର ସହାନୁଭୂତିହୀନ ମାଲିକର ଗ୍ଭକର ଠାରୁ ବେଶୀ ଓ ଭଲ କାମ କରୁଛି ।

କେତେ ଲୋକ କହି ପାରନ୍ତି ଯେ, ଏ ନିୟମ ଠିକ୍ ନୁହେଁ; କାରଣ ସ୍ନେହ ଓ କୃପାର ପ୍ରତିଦାନ ଅନେକ ସମୟରେ ଓଲଟା ହିଁ ମିଳିଥାଏ ଓ ଗ୍ଭକର ମୁଣ୍ଡରେ ଚଢ଼ିଥାଏ । କିନ୍ତୁ ଏ ଯୁକ୍ତି ଠିକ୍ ନୁହେଁ । ଯେଉଁ ଗ୍ଭକର ସ୍ନେହର ପରିବର୍ତ୍ତିରେ ବେପରୱା

ଭାବ ଦେଖେଇ ଥାଏ ତା’ପ୍ରତି କଠୋର ବ୍ୟବହାର କଲେ ସେ ମାଲିକ ପ୍ରତି ବିଦ୍ୱେଷ କରିବାକୁ ଆରମ୍ଭ କରିବ । ଉଦାର ହୃଦୟ ମାଲିକ ସହିତ ଯେଉଁ ଗୃକର ବେଇମାନୀ କରେ ସେ ଅନ୍ୟାୟୀ ମାଲିକର ନୁକସାନ କରିଦେବ ।

ଏହାର ସାର ହେଉଛି ଯେ, ସବୁବେଳେ ସବୁ ଲୋକଙ୍କ ପ୍ରତି ପରୋପକାର ମନୋଭାବ ପୋଷଣ କଲେ ପରିଣାମ ଭଲହିଁ ହୋଇଥାଏ । ସହାନୁଭୂତି ଗୋଟାଏ ପ୍ରକାରର ଶକ୍ତି ବୋଲି ଧରି ନେଇହିଁ ଆମେ ଏଠି ତାହା ବିଷୟରେ ବିଚାର କରୁଛୁ । ସ୍ନେହ ଏକ ଭଲ ଜିନିଷ । ସେଥିଯୋଗୁଁ ସବୁବେଳେ ତାହା ବ୍ୟବହାର କରିବା ଉଚିତ—ଏ ତ ଏକ ଭିନ୍ନ କଥା ଓ ଏଠି ଆମେ ସେ କଥା ବିଚାର ବସି ନାହୁଁ । ଏଠି ତ ଆମେ କେବଳ ଏଇ କଥା ଦର୍ଶାଉଛୁଁ ଯେ ଅର୍ଥଶାସ୍ତ୍ରର ସାଧାରଣ ନିୟମଗୁଡିକ (ଯେମିତି ଆମେ ଏବେ ଦେଖିଲୁ) ସ୍ନେହ ସହାନୁଭୂତିରୂପୀ ଶକ୍ତି ନଷ୍ଟଭ୍ରଷ୍ଟ କରିଦିଏ । ଏତିକି ନୁହେଁ, ଏହା ଏକ ଭିନ୍ନପ୍ରକାର ଶକ୍ତି ହୋଇଥିବା ଯୋଗୁଁ ଅର୍ଥଶାସ୍ତ୍ରର ଅନ୍ୟାୟ ନିୟମ ଗୁଡ଼ିକ ସହିତ ତାହା ଖାପ ଖାଏ ନାହିଁ । ସେ ନିୟମ ଗୁଡ଼ିକୁ ହଟେଇ ଦେଲେ ଯାଇଁ ତାହା ତିଷ୍ଠି ପାରିବ । ଯଦିମାଲିକ ନିକିତି ଧରି ହିସାବ କରି ବସିବ ଓ ପ୍ରତିଦାନ ମିଳିବା ଆଶାରେହିଁ ସ୍ନେହ ଦେଖେଇବ ତ ତାକୁ ନିରାଶ ହେବାକୁ ପଡ଼ିବାର ସମ୍ଭାବନା ଅଛି । ସ୍ନେହ ତ ସ୍ନେହ ପାଇଁ ହିଁ କରିବା ଉଚିତ । ତାର ପ୍ରତିଦାନ ତ ନ ମାଗୁଣୁ ଆପେ ମିଳିଯାଏ । କଥାରେ ଅଛି ଯେ ନିଜେ ନିଜ ଜୀବନ ଦେଇଦିଏ ସେ ଜୀବନ ପାଇ ଯାଏ ଓ ଯେ ଆପଣା ଜୀବନକୁ ବଞ୍ଚେଇବାକୁ ଚେଷ୍ଟା କରେ ସେ ତାହାକୁ ହରେଇ ବସେ ।

ସେନା ଓ ସେନାନାୟକଙ୍କ ଉଦାହରଣ ନିଅନ୍ତୁ । ଯେଉଁ ସେନାନାୟକ ଅର୍ଥଶାସ୍ତ୍ରର ନିୟମ ଖଟେଇ ଆପଣା ସେନାର ସିପେଇମାନଙ୍କଠୁଁ କାମ ଆଦାୟ କରିବାକୁ ବସିବ ସେ ତାଙ୍କଠୁଁ ନିର୍ଦ୍ଦିଷ୍ଟ କାମ ଆଦାୟ କରିପାରିବ ନାହିଁ । ଏ କଥାର କେତେ ଉଦାହରଣ ମିଳିବ ଯେ, ଯେଉଁ ସେନାର ସର୍ଦ୍ଦାର ଆପଣା ସିପେଇଙ୍କ ସହିତ ଘନିଷ୍ଠତା ରଖିଥାନ୍ତି, ତାଙ୍କ ପ୍ରତି ସ୍ନେହପୂର୍ଣ୍ଣ ବ୍ୟବହାର କରନ୍ତି, ତାଙ୍କର ଭଲରେ ଖୁସୀ ହୁଅନ୍ତି, ତାଙ୍କ ସୁଖ-ଦୁଃଖରେ ଭାଗୀ ହୁଅନ୍ତି, ତାଙ୍କୁ ରକ୍ଷା କରନ୍ତି—ମୋଟ ଉପରେ ଯେ ତାଙ୍କ ପ୍ରତି ସହାନୁଭୂତି ପୋଷଣ କରନ୍ତି, ସେ ତାଙ୍କଠୁଁ ଯେତେ ଇଚ୍ଛା ସେତେ କଠିନ କାମ ଆଦାୟ କରିପାରନ୍ତି । ଐତିହାସିକ ଉଦାହରଣରେ ଆମେ ଦେଖୁଁ ଯେ, ଯେଉଁଠି ସିପେଇମାନେ ଆପଣା ସେନାନାୟକଙ୍କୁ ଭଲ ପାଉ ନ ଥିଲେ ସେଠି ଯୁଦ୍ଧରେ କ୍ୱଚିତ୍ କେଉଁଠି ବିଜୟ ମିଳିଛି । ଏହିରୂପେ, ସେନାପତି ଓ ସୈନିକଙ୍କ ଭିତରେ ସ୍ନେହ ସହାନୁଭୂତିର ବଳହିଁ ବାସ୍ତବିକ ବଳ । ଏ କଥା ଡକେଇତି ମାନଙ୍କ ଦଳରେ ବି ଦେଖାଯାଇ ଥାଏ । ଡକେଇତି ମାନଙ୍କଦଳ ବି ଆପଣା ସର୍ଦ୍ଦାର ପ୍ରତି ପୂରା ସ୍ନେହଭାବ ପୋଷଣ କରିଥାନ୍ତି, କିନ୍ତୁ ମିଲ୍ ଆଦି କଳ-କାରଖାନାର ମାଲିକ ଓ ଶ୍ରମିକମାନଙ୍କ ଭିତରେ ଆମେ ଏ ଧରଣର ଘନିଷ୍ଠତା ଦେଖିବାକୁ ପାଉନାହିଁ । ଏହାର ଗୋଟିଏ କାରଣ ହୋଉଛି ଯେ, ଏ ଧରଣର କାରଖାନାରେ ଶ୍ରମିକ-ମାନଙ୍କର ମଜୁରୀର ଭିତ୍ତି ହେଉଛି ଦେଣନେଣର ଚାହିଦା ଓ ଯୋଗାଣର ନିୟମ । ଏଥିଯୋଗୁଁ ମାଲିକ ଓ ଶ୍ରମିକ ଭିତରେ ପ୍ରୀତି ପରିବର୍ତ୍ତେ ଅପ୍ରୀତିହିଁ ଲାଗି ରହିଥାଏ ଓ ସହାନୁଭୂତି ପରିବର୍ତ୍ତେ ତାଙ୍କର ପରସ୍ପର ସଂପର୍କରେ ବିରୋଧ, ପ୍ରତିଦ୍ୱନ୍ଦ୍ୱିତା, ଦେଖା-

ଯାଇଥାଏ । ଏଭଳି ଅବସ୍ଥାରେ ଆମକୁ ଦୁଇଟି ପ୍ରଶ୍ନର ବିଚାର କରିବାକୁ ହେବ ।

ପ୍ରଥମ ପ୍ରଶ୍ନ ହେଉଛି ଯେ, ଚାହିଦା ଓ ଯୋଗାଣର ବିଚାର ନ କରି ଚାକରଙ୍କ ବେତନ ନିର୍ଦ୍ଦିଷ୍ଟ କରିଦେବା କେତେଦୂର ସମ୍ଭବ ।

ଦ୍ୱିତୀୟଟି ହେଉଛି ଯେ, ଯେମିତି ପୁରୁଣା ପରିବାର-ମାନଙ୍କରେ ମାଲିକ-ଚାକରଙ୍କର ବା ସେନାପତି-ସୈନିକଙ୍କର ସ୍ଥାୟୀ ସମ୍ବନ୍ଧ ରହୁଥାଏ, ସେହିପରି କାରଖାନାମାନଙ୍କରେ ସର୍ବଦା ଯେଉଁପରି ପରିସ୍ଥିତି ଆସୁ ପଛେ, ଶ୍ରମିକମାନଙ୍କର ସଂଖ୍ୟା କମ୍ ବେଶୀ ନ କରି ସ୍ଥିର ରଖି ହେବ କିପରି ।

ପ୍ରଥମ ପ୍ରଶ୍ନର ଆଲୋଚନା କରିବା । ଆଶ୍ଚର୍ଯ୍ୟର କଥା ଯେ ଅର୍ଥଶାସ୍ତ୍ରବିତ୍‌ମାନେ କାରଖାନାମାନଙ୍କରେ ଶ୍ରମିକମାନଙ୍କର ମଜୁରିର ଗୋଟିଏ ଦର ନିର୍ଦ୍ଦିଷ୍ଟ ହୋଇଯିବାର ଉପାୟ ବାହାର କରୁନାହାନ୍ତି । ଅଥଚ ଆମେ ଦେଖୁଛୁ ଯେ ଇଂଲଣ୍ଡର ପ୍ରଧାନ-ମନ୍ତ୍ରୀ ପଦ କିଛି ନିଲାମ ଡାକ ହୋଇ ବିକ୍ରୀ ହେଉ ନାହିଁ । ସେ ପଦରେ ଯେଉଁଭଳି ଲୋକ ଆଉ ପଛେ ତାକୁ ସେହି ଏକ ଦରମା ମିଳୁଛି । ସେମିତି ଯେଉଁ ଲୋକ ସବୁଠୁଁ କମ୍ ଦରମା ନେବ ତାକୁ ଆମେ ଧର୍ମଯାଜକ ( ବିଶପ୍ ) ପଦ ଦେଉ ନାହୁଁ । ଡାକ୍ତର ଓ ଓକିଲଙ୍କ ସାଥିରେ ବି ସାଧାରଣତଃ ଏ ଧରଣର ସମ୍ବନ୍ଧ ରଖାଯାଏ ନାହିଁ । ଏହିରୂପେ ଆମେ ଦେଖୁଛୁ ଯେ ଉକ୍ତ ଉଦା-ହରଣରେ ଧରାବନ୍ଧା ପାରିଶ୍ରମିକହିଁ ଦିଆଯାଏ । ଏଥିରେ କେହି ଏ କଥା ପଚାରିପାରେ ଯେ, କ'ଣ ଭଲ ମନ୍ଦ ଉଭୟ ପ୍ରକାରର ଶ୍ରମିକଙ୍କର ମଜୁରି ସମାନ ହେବା ଠିକ୍ ? ପ୍ରକୃତରେ ତ ଏହାହିଁ

ହେବା ଉଚିତ । ଏଦ୍ୱାରା ପରିଣାମ ହେବ ଯେ, ଯେମିତି ସବୁ ଡାକ୍ତର ଓ ଓକିଲଙ୍କ ଫିସ୍ ସମାନ ହୋଇଥିବାରୁ ଆମେ ଭଲ ଓକିଲ ଓ ଡାକ୍ତରଙ୍କ ପାଖକୁ ହିଁ ଯାଉଁ, ସେମିତି ସବୁ ଶ୍ରମିକଙ୍କ ମଜୁରି ସମାନ ହୋଇଥିବାରୁ ଆମେ ଭଲ ରାଜମିସ୍ତ୍ରୀ ଓ ଭଲ ବଢ଼େଇଙ୍କ ଦ୍ୱାରାହିଁ କାମ କରେଇବା ପସନ୍ଦ କରିବୁଁ । ତାକୁ କୌଣସି କାମ ପାଇଁ ପସନ୍ଦ କରିବାହିଁ ତ ଭଲ କାରିଗରର ପୁରସ୍କାର । ସେଥିଯୋଗୁଁ ସ୍ୱାଭାବିକ ଓ ସଚ୍ଚା ବେତନର ଦର ନିର୍ଦ୍ଦିଷ୍ଟ ହୋଇଯିବା ଉଚିତ । ଯେଉଁଠି ଅନାଡ଼ି ଲୋକ କମ୍ ମଜୁରି ନେଇ ମାଲିକକୁ ଠକେଇ ଦେଇପାରେ ସେଠି ଶେଷରେ ଖରାପ ପରିଣାମ ହିଁ ହୋଇଥାଏ ।

ଏବେ ଦ୍ୱିତୀୟ ପ୍ରଶ୍ନଟିର ବିଚାର କରିବା । ତାହା ହେଉଛି ଏୟା ଯେ, ବେପାରର ଅବସ୍ଥା ଯାହାହେଉ ପଛେ, କାରଖାନାରେ ଯେତେ ଲୋକଙ୍କୁ ମୂଳରୁ ରଖା ଯାଇଥିବ ସବୁଦିନେ ସେମାନଙ୍କୁ ରଖିବା ଉଚିତ । କର୍ମଚାରୀମାନଙ୍କୁ ଅନିଶ୍ଚିତଭାବରେ କାମ ମିଳିଲେ ସେମାନେ ଉଚ୍ଚ ପାରିଶ୍ରମିକ ଦାବୀ କରିବାକୁ ବାଧ୍ୟ ହୁଅନ୍ତି କିନ୍ତୁ ଯଦି ସେମାନଙ୍କର କୌଣସିମତେ ଏ ବିଶ୍ୱାସ ଆସିଯିବ ଯେ, ତାଙ୍କର ଚାକିରୀସାରା ଜୀବନ ରହିବ, ତେବେ ସେ ବହୁତ କମ୍ ବେତନରେ କାମ କରିବେ । ଏହିରୂପେ ଏ କଥା ସ୍ପଷ୍ଟ ଯେ, ଯେଉଁ ମାଲିକ ଆପଣା କର୍ମଚାରୀଙ୍କୁ ସ୍ଥାୟୀରୂପେ ନିଯୁକ୍ତ କରେ ତାର ଶେଷକୁ ଲାଭ ହୁଏ ଓ ଯେଉଁ ଲୋକ ସ୍ଥାୟୀ ଚାକିରୀ କରନ୍ତି ତାଙ୍କର ବି ଲାଭ ହୁଏ । ଅବଶ୍ୟ ଏଭଳି ସବୁ କାରଖାନାରେ ବେଶୀ ଲାଭ ହୋଇପାରିବ ନାହିଁ । ସେମାନେ ବଡ଼ ବଡ଼ ବିପଦ ମୁଣ୍ଡେଇ ପାରିବେ ନାହିଁ । ଗୁରୁତର ପ୍ରତିଯୋଗିତା କରିପାରିବେ ନାହିଁ । ସିପେହୀ ସେନାପତି ପାଇଁ ମରିବାକୁ ପ୍ରସ୍ତୁତ

ହୁଏ ଓ ସିପେହ୍ଵୀ କାମ ସାଧାରଣ ମୂଲ୍ୟଅର ପେଶାଠାରୁ ବେଶୀ ସମ୍ମାନଜନକ ମନେ କରାଯାଇଥାଏ । ପ୍ରକୃତରେ ଦେଖିବାକୁ ଗଲେ ସିପେହ୍ଵୀର କାମ ହତ୍ୟା କରିବାର ନୁହେଁ, ଅନ୍ୟମାନଙ୍କୁ ରକ୍ଷା କରିବାକୁ ଯାଇ ନିଜେ ଜୀବନ ଦେବା ତାର କାମ । ଯେ ସିପେହ୍ଵୀ ହୁଏ ସେ ଆପଣା ଜୀବନ ତା ରାଜ୍ୟ ହାତକୁ ଦେଇଦିଏ । ଓକିଲ, ଡାକ୍ତର ଓ ପାଦ୍ରୀଙ୍କ ସମ୍ବନ୍ଧରେ ବି ଆମର ଏହି ବିଶ୍ୱାସ ଓ ସେଥିଯୋଗୁଁ ଆମେ ତାଙ୍କୁ ସମ୍ମାନ ଦୃଷ୍ଟିରେ ଦେଖିଥାଉଁ । ଓକିଲର ଜୀବନ ଦେଇ ଦେବାକୁ ପଡ଼ିଲେ ବି ସେ ନ୍ୟାୟହିଁ କରିବା ଉଚିତ । ବୈଦ୍ୟର ବହୁ ସଙ୍କଟ ସହି ମଧ୍ୟ ଆପଣା ରୋଗୀର ଚିକିତ୍ସା କରିବା ଉଚିତ ଓ ପାଦ୍ରୀ ବା ଧର୍ମଯାଜକଙ୍କର କର୍ତ୍ତବ୍ୟ ହେଉଛି ଯେ, ତାଙ୍କ ଉପରେ ଯାହା ବିପଦ ଆପଦ ପଡ଼ୁ ପଛେ ସେ ଆପଣା ଯଜମାନମାନଙ୍କୁ ଜ୍ଞାନ ଦେଉଥିବେ ଓ ଠିକ୍ ବାଟ ବତାଉଥିବେ ।

ଯଦି ଉପରୋକ୍ତ ଧନ୍ଦାମାନଙ୍କରେ ଏ କଥା ହୋଇପାରେ ତ ବେପାରରେ ନ ହୋଇପାରିବ କାହିଁକି ? ଯେତେବେଳେ ବେପାର ସାଙ୍ଗରେ ଅନୀତିର ସ୍ଥାୟୀ ସମ୍ବନ୍ଧ ରହିବ ବୋଲି ଧରି ନେବାର କାରଣ କ'ଣ ? ବିଚାର କଲେ ଦେଖାଯାଏ ଯେ, ବେପାରୀ ସବୁଦିନେ ସ୍ୱାର୍ଥପର ବୋଲିହିଁ ଧରି ନିଆଯାଇଛି । ବେପାରୀ କାମ ବି ଜନସାଧାରଣଙ୍କ ପାଇଁ ଆବଶ୍ୟକ କିନ୍ତୁ ଆମେ ଧରି ନେଇଛୁ ଯେ, ନିଜର ସମ୍ପତ୍ତି ବଢ଼େଇବାହିଁ କେବଳ ତାର ଉଦ୍ଦେଶ୍ୟ । ବେପାରୀ ଯେମିତି ଖୁବ୍ ଚଞ୍ଚଳ ଚଞ୍ଚଳ ଧନ ଅର୍ଜି ପାରିବ ଆଇନ ମଧ୍ୟ ସେହି ଦୃଷ୍ଟିରୁ ଗଢ଼ା ଯାଇଥାଏ । ଗ୍ରାହକ ଯେତେ ପାରେ କମ୍ ଦାମ୍ ଦେବା ଓ ବେପାରୀ ଯେତେ ପାରେ ବେଶୀ ଦାବୀ କରି ନେବା ଗୋଟିଏ ଚଳଣି ହୋଇଗଲାଣି ।

ଲୋକେ ନିଜେ ବେପାରୀଙ୍କୁ ଏ ଅଭ୍ୟାସ କରେଇଛନ୍ତି ଓ ଏବେ ତାଙ୍କୁ ତା ବେଇମାନି ପାଇଁ ଘୃଣା ଚକ୍ଷୁରେ ଦେଖୁଛନ୍ତି । ଏ ପ୍ରଥା ବଦଳେଇବା ଆବଶ୍ୟକ । ବେପାରୀଙ୍କୁ ଆପଣା ସ୍ୱାର୍ଥହିଁ ସାଧିବାକୁ ହେବ; କେବଳ ଧନହିଁ ଅର୍ଜିବାକୁ ହେବ, ଏ୍ୟା' ଗୋଟାଏ କିଛି ନିୟମ ହୋଇ ଯାଇ ନାହିଁ । ଏଭଳି ବେପାରକୁ ଆମେ ବେପାର ନ କହି ଚୋରି କହିବା । ସିପେହୀ ଯେମିତି ରାଜ୍ୟର ସୁଖ ପାଇଁ ଜୀବନ ଦେଇଦିଏ, ସେମିତି ବେପାରୀ ମଧ ଲୋକଙ୍କ ସୁଖ ପାଇଁ ଧନ ଉଡ଼େଇ ଦେବା ଠିକ୍, ଜୀବନ ବି ଦେଇଦେବା ଠିକ୍ ।

ସବୁ ରାଜ୍ୟରେ—ସିପେହୀର ପେଶା ହୋଉଛି ଲୋକଙ୍କୁ ରକ୍ଷା କରିବା; ଧର୍ମଯାଜକର ତାଙ୍କୁ ଶିକ୍ଷା ଦେବା; ଚିକିତ୍ସକର ତାଙ୍କୁ ସୁସ୍ଥ ରଖିବା; ଓକିଲର ତାଙ୍କ ଭିତରେ ନ୍ୟାୟ ପ୍ରଚାର କରିବା; ଓ ବେପାରୀର ହେଉଛି ତାଙ୍କ ପାଇଁ ଆବଶ୍ୟକ ମାଲ ଯୋଗେଇ ଦେବା ।

ସମୟ ପଡ଼ିଲେ ଆପଣା ଜୀବନ ଦେଇଦେବା ମଧ ଏ ସମସ୍ତଙ୍କର କର୍ତ୍ତବ୍ୟ । ଅର୍ଥାତ୍—ପଛକୁ ନ ହଟି ସିପେହୀ ଆପଣା ଆସ୍ଥାନରେ ଦୃଢ଼ ରହି ମୃତ୍ୟୁବରଣ କରିନେବା ଠିକ୍ ।

ପ୍ଲେଗ୍ ମହାମାରୀବେଳେ ପଳେଇ ଯିବା ପରିବର୍ତ୍ତେ ନିଜେ ମହାମାରୀ କବଳରେ ପଡ଼ିଲେ ବି ଚିକିତ୍ସକ ସେଠି ରହି ରୋଗୀମାନଙ୍କର ଚିକିତ୍ସା କରୁଥିବା ଠିକ୍ ।

ସତ୍ୟ ଶିକ୍ଷା ଦେବା ଯୋଗୁଁ ଲୋକେ ମାରି ପକେଇଲେ ବି ଶେଷ ନିଶ୍ୱାସଯାଏ ଧର୍ମଯାଜକ ମିଥ୍ୟା ବଦଳରେ ସତ୍ୟ ଶିକ୍ଷାହିଁ ଦେଉଥିବା ଠିକ୍ ।

ନ୍ୟାୟ ପାଇଁ ମରିବାକୁ ପଡ଼ିଲେ ବି ଓକିଲର ନ୍ୟାୟ କରିବାପାଇଁ ଯତ୍ନ କରିବା ଠିକ୍ ।

ଏହି ପ୍ରକାରେ ଉପରୋକ୍ତ ଧନ୍ଦା କରୁଥିବା ଲୋକଙ୍କ ପାଇଁ ମରିବାର ଉପଯୁକ୍ତ ସମୟ କେତେବେଳେ ତାହା ବେପାରୀ ଓ ଅନ୍ୟ ସମସ୍ତଙ୍କର ବି ବିଚାରିବାର କଥା । ଯେଉଁ ଲୋକ ଠିକ୍ ବେଳରେ ମରିବାକୁ ପ୍ରସ୍ତୁତ ନୁହେଁ ସେ ବଞ୍ଚିବା କାହାକୁ କହନ୍ତି ତାହା ଜାଣେ ନାହିଁ । ଆମେ ଦେଖି ସାରିଛୁଁ ଯେ, ବେପାରୀର କାମ ହେଉଛି ଜନସାଧାରଣଙ୍କୁ ଆବଶ୍ୟକ ଜିନଷ ଯୋଗେଇବା । ଯେମିତି ଧର୍ମଯାଜକଙ୍କର କାମ ଦରମା ନେବା ନୁହେଁ, ଉପଦେଶ ଦେବା, ସେମିତି ବେପାରୀର କାମ ଜିନଷ ଯୋଗେଇ ଦେବା ମାତ୍ର ଲାଭ କରିବା ନୁହେଁ । ଧର୍ମଯାଜକଙ୍କୁ ଖୋରାକ ଓ ବେପାରିକୁ ଲାଭ ତ ମିଳି ଯାଇଥାଏ, କିନ୍ତୁ ଦୁହିଁଙ୍କ ଭିତରୁ କାହାରି ହେଲେ କାମ ଦରମା ବା ଲାଭ ଆଡ଼କୁ ଅନେଇବା ନୁହେଁ । ତାକୁ ଦରମା ବା ଲାଭ ମିଳୁ ବା ନ ମିଳୁ ସେ ଆପଣା କାମ, ଆପଣା କର୍ତ୍ତବ୍ୟ କରି ଯାଉଥିବା ଗୁହି । ଏ ବିଚାର ଠିକ୍ ହୋଇଥିଲେ, ବେପାରୀକୁ ଉଚ୍ଚ ଆସନ ମିଳିବା ଗୁହି, କାରଣ ତାର କାମ ହେଉଛି ବଢ଼ିଆ ମାଲ ତିଆରି କରିବା ଓ ଯେମିତି ଲୋକଙ୍କର ଲାଭ ହେବ ସେହିଭଳିଭାବରେ ତାହା ତାଙ୍କୁ ଯୋଗେଇ ଦେବା । ଏ କାମରେ ଯେଉଁ ଶହ ଶହ ବା ହଜାର ହଜାର ଲୋକ ତାହା ଅଧୀନରେ କାମ କରୁଥିବେ ସେମାନଙ୍କୁ ରକ୍ଷା କରିବା ଓ ସେଗରେ ସେବା ଯତ୍ନ କରିବା ବି ତାର କର୍ତ୍ତବ୍ୟ । ଏ କଥା କରିବାପାଇଁ ବହୁତ ଧୈର୍ଯ୍ୟ, ବହୁତ ସ୍ନେହ ସହାନୁଭୂତି ଓ ଚତୁରତା ଦରକାର ।

ଅନ୍ୟାନ୍ୟ କାମ କରୁଥିବା ଅନ୍ୟମାନଙ୍କ ପରି ବେପାରୀର ମଧ୍ୟ ଜୀବନ ଦେଇଦେବା ବେଳ ଆସିବ ତ ସେ ତାହା ଦେବା

ଦେବ । ଏଭଳି ବେପାରୀ ଉପରେ ଯେତେ ବିପଦ ପଡ଼ୁ, ସେ ପଛେ ଭିକାରୀ ହୋଇଯାଉ, ତଥାପି ସେ ଖରାପ ମାଲ ବିକିବ ନାହିଁ କି ଲୋକଙ୍କୁ ଠକିବ ନାହିଁ । ସାଙ୍ଗେ ସାଙ୍ଗେ ନିଜ କର୍ମ-ଚାରୀଙ୍କ ପ୍ରତି ଅତ୍ୟନ୍ତ ସ୍ନେହପୂର୍ଣ୍ଣ ବ୍ୟବହାର କରିବ । ବଡ଼ ବଡ଼ କାରବାର ବା କାରଖାନାରେ ଚାକିରି କରୁଥିବା ଯୁବକମାନଙ୍କ ଭିତରୁ ଅନେକଙ୍କୁ ଅନେକ ସମୟରେ ଘରଦ୍ୱାର ଛାଡ଼ି ଦୂରକୁ ଯିବାକୁ ପଡ଼େ । ସେଠି ତ ମାଲିକହିଁ ସେମାନଙ୍କର ବାପ ମା ହେବାର କଥା । ଏ ବିଷୟରେ ମାଲିକ ବେପରୱା ହେଲେ ସେ ଯୁବକ ବିଚାରୀମାନେ ବାପ ମା ହୀନ ହୋଇଯାନ୍ତି । ସେଥି-ଯୋଗୁଁ ବେପାରୀପ୍ରତି ପଦେ ପଦେ ନିଜକୁ ଏ ପ୍ରଶ୍ନ ପଚାରିବା ଉଚିତ ଯେ "ମୁଁ ମୋ ପୁଅମାନଙ୍କୁ ଯେମିତି ପାଳୁଛି ମୋ କର୍ମଚାରୀଙ୍କ ସହିତ ସେମିତି ବ୍ୟବହାର କରୁଛି ନା ନାହିଁ ?''

ଜାହାଜର କାପ୍ତାନ ଅଧୀନରେ ଯେଉଁ ଖଲାସୀ ଥାନ୍ତି ତାଙ୍କ ଭିତରେ କେବେ କେବେ ତାର ପୁଅ ଥାଇପାରେ । ସବୁ ଖଲାସୀଙ୍କୁ ନିଜ ପୁଅ ସହିତ ସମାନ ମଣିବା କାପ୍ତାନର କର୍ତ୍ତବ୍ୟ । ସେହିପରି, ବେପାରୀର ବହୁତ କର୍ମଚାରୀଙ୍କ ଭିତରେ ତାର ପୁଅ ବି ଥିବ ତ ସେ ତା ସହିତ ଯେଉଁଭଳି ବ୍ୟବହାର କରେ ଅନ୍ୟମାନଙ୍କ ସାଥିରେ ମଧ୍ୟ ସେହିଭଳି କରିବା ଦରକାର । ଏହାକୁହିଁ ସଚ୍ଚା ଅର୍ଥଶାସ୍ତ୍ର କହିବା ଉଚିତ । ଆଉ, ଯେମିତି ଜାହାଜ ବିପଦରେ ପଡ଼ିଲେ କାପ୍ତାନର କର୍ତ୍ତବ୍ୟ ହେଉଛି ଯେ ସେ ସମସ୍ତଙ୍କ ପଛରେ ଜାହାଜରୁ ଓହ୍ଲାଇବ, ସେମିତି ଦୁର୍ଭିକ୍ଷ ଆଦି ସଙ୍କଟ ବେଳେ ନିଜ ପୂର୍ବରୁ ନିଜେ ଲୋକଙ୍କୁ ଆଗେ ରକ୍ଷା କରିବା ବେପାରୀର କର୍ତ୍ତବ୍ୟ ହେବ । ଏଭଳି ବିଚାର କେତେକ ଲୋକଙ୍କୁ ବିଚିତ୍ର ଜଣାପଡ଼ିବା ସମ୍ଭବ, କିନ୍ତୁ ଏଭଳି ଜଣାପଡ଼ିବାଟାହିଁ ଏ ଯୁଗର

ବିଶେଷ ନୂତନତ୍ୱ; କାରଣ ସମସ୍ତେ ଏକଥା ବିଚାର କଲେ ଦେଖିପାରିବେ ଯେ ଉପରେ ଯାହା କୁହାଗଲା ପ୍ରକୃତ ମତ କେବଳ ତାହାହିଁ ହୋଇପାରେ । ଯେଉଁ ସମାଜକୁ ଉପରକୁ ଉଠିବାକୁ ହେବ ସେ ସମାଜରେ ଅନ୍ୟ ପ୍ରକାର ମତ କଦାପି ଚଳି ନ ପାରେ । ଇଂରେଜ ଜାତି ଯେ ଆଜିଯାଏ ତିଷ୍ଠି ରହିଛି ତାର କାରଣ ସେ ଅର୍ଥଶାସ୍ତ୍ରର ନିୟମକୁ ଅନୁସରଣ କରିଛି ବୋଲି ନୁହେଁ । ମାତ୍ର କେତେକ ଲୋକ ସେ ନିୟମ ଭଙ୍ଗ କରି ଉପରୋକ୍ତ ନୈତିକ ନିୟମ ପାଳନ କରିଛନ୍ତି ବୋଲି ତାହା ତିଷ୍ଠି ରହିଛି । ଏହାରଦ୍ୱାରା ଏ ଜାତି ଆଜିଯାଏ ଅପଣା ଅସ୍ତିତ୍ୱ ବଜାୟ ରଖିପାରିଛି । ଏ ନୀତିନିୟମକୁ ଭାଙ୍ଗିଲେ କିଭଳି କ୍ଷତି ହୁଏ ଓ ସମାଜକୁ କପରି ପଛକୁ ହଟିବାକୁ ପଡ଼େ; ତାହା ଆମେ ପରେ ବିଚାର କରିବା ।

ସତତାର ମୂଳ ସମ୍ବନ୍ଧରେ ଆମେ ପୂର୍ବରୁ କହିସାରିଛୁଁ । କୌଣସି ଅର୍ଥଶାସ୍ତ୍ରବିତ୍ ତହିଁର ଜବାବ ନିମ୍ନମତେ ଦେଇପାରନ୍ତି "ଏ କଥା ଠିକ୍ ଯେ ପରସ୍ପର ପ୍ରତି ସ୍ନେହସହାନୁଭୂତି ଦ୍ୱାରା କିଛି ଲାଭ ହୋଇଥାଏ, କିନ୍ତୁ ଅର୍ଥଶାସ୍ତ୍ରୀ ଏଭଳି ଲାଭର ହିସାବ କରନ୍ତି ନାହିଁ । ସେମାନେ ଯେଉଁ ବିଜ୍ଞାନର ଆଲୋଚନା କରନ୍ତି, ସେଥିରେ କେବଳ ଏଇ କଥା ବିଚାର କରନ୍ତି ଯେ, ଧନୀ ହେବାର ଉପାୟ କ'ଣ ? ଏ ବିଜ୍ଞାନ ଭୁଲ ନୁହେଁ, ମାତ୍ର ଅଭିଜ୍ଞ-ତାରୁ ଏହାର ସିଦ୍ଧାନ୍ତ ପ୍ରଭାବଶାଳୀ ବୋଲି ଜଣା ଯାଇଛି । ଯେଉଁମାନେ ଏ ଶାସ୍ତ୍ର ଅନୁସାରେ ଚଳନ୍ତି ସେମାନେ ଅବଶ୍ୟହିଁ ଧନୀ ହୁଅନ୍ତି ଓ ଯେ ନ ଚଳନ୍ତି ସେ କାଙ୍ଗାଳ ହୋଇଯାନ୍ତି । ୟୁରୋପର ସବୁ ଧନୀକମାନେ ଏହି ବିଜ୍ଞାନ ଅନୁସାରେ ଚଳି ପଇସା କମେଇଛନ୍ତି । ଏହା ବିରୁଦ୍ଧରେ ଯୁକ୍ତି ବାଢ଼ିବା ବୃଥା ।

ପଇସା କେମିତି ଆସେ, କେମିତି ଯାଏ, ସେ କଥା ପ୍ରତ୍ୟେକ ଅନୁଭବୀ ଲୋକ ଜାଣେ ।"

କିନ୍ତୁ ଏ ଜବାବ ଠିକ୍ ନୁହେଁ । ବେପାରୀ ପଇସା କମାନ୍ତି ସତ କିନ୍ତୁ ସେମାନେ ପ୍ରକୃତରେ ତାହା କମେଇଲେ କି ନାହିଁ ଓ ତା'ଦ୍ୱାରା ରାଷ୍ଟ୍ରର କିଛି କଲ୍ୟାଣ ହେଲାକି ନାହିଁ ତାହା ଜାଣି-ପାରନ୍ତି ନାହିଁ । 'ଧନବାନ୍' ଶବ୍ଦର ଅର୍ଥ ବି ସେମାନେ ଅନେକ ସମୟରେ ଜାଣନ୍ତି ନାହିଁ । ସେ ଏ କଥା ଜାଣିପାରନ୍ତି ନାହିଁ ଯେ, ଯେଉଁଠି ଧନୀ ଥିବେ ସେଠି ଗରିବ ବି ଥିବେ । କେତେ କେତେ ଥର ସେମାନେ ଭୁଲରେ ଏ କଥା ଧରି ନିଅନ୍ତି ଯେ, ଗୋଟାଏ ଅମୁକ ନିର୍ଦ୍ଦିଷ୍ଟ ନିୟମରେ ଚଳିଲେ ସମସ୍ତେ ଧନୀ ହୋଇ-ପାରିବେ । ପ୍ରକୃତରେ ଦେଖିଲେ ଏ ବ୍ୟାପାର ହେଉଛି କୂଅର ରହଟ ପମ୍ପ (ଘଟମାଳ) ପରି । ଗୋଟାଏ ପାଣି ଖାଲି ହେଲେ ଯାଇ ଆଉ ଗୋଟିଏ ପୂର୍ଣ୍ଣ ହୁଏ । ଆପଣଙ୍କ ଠେଇଁ ଯେଉଁ ଟଙ୍କା-ଏ ଅଛି, ଯାହା ପାଖରେ ସେତକ ନାହିଁ ତା' ଉପରେ ସେ ଟଙ୍କାର କର୍ତ୍ତୃତ୍ୱ ଚଳେ । ଯଦି ଆପଣଙ୍କ ସାମନାବାଲା ଲୋକର ଆପଣଙ୍କ ଟଙ୍କାଟି ଦରକାର ନ ଥିବ ତ ଆପଣଙ୍କ ଟଙ୍କା ଅକାମି ହୋଇଯିବ । ଆପଣଙ୍କର ପଡ଼ୋଶୀର ଟଙ୍କାର ଅଭାବରେ ହିଁ ତ ଆପଣଙ୍କର ଟଙ୍କାର ଶକ୍ତି ରହିଛି । ଯେଉଁଠି ଦାରିଦ୍ର୍ୟ ରହିଛି ସେଇଠି ବଡ଼ଲୋକ ଚଳିପାରିବ । ଯାହାର ଅର୍ଥ ହେଉଛି ଯେ, ଜଣେ ଲୋକ ବଡ ଲୋକ ହେବାକୁ ହେଲେ ତାକୁ ତାର ପଡ଼ୋଶୀମାନଙ୍କୁ ଗରିବ କରି ରଖିବାକୁ ପଡ଼ିବ ।

ସାର୍ବଜନୀନ ଅର୍ଥଶାସ୍ତ୍ରର ଅର୍ଥ ହେଉଛି, ଠିକ୍ ସମୟରେ, ଠିକ୍ ସ୍ଥାନରେ, ଆବଶ୍ୟକ ଓ ସୁଖଦାୟକ ଜିନିଷ ଉତ୍ପନ୍ନ କରିବା, ତାକୁ ସମ୍ଭାଳି ସାଇତି ରଖିବା ଓ ତାହା ଅଦଳ ବଦଳ

କରିବା । ଯେଉଁ ଚାଷୀ ଠିକ୍ ସମୟରେ ଫସଲ କାଟେ, ଯେଉଁ ରାଜମିସ୍ତ୍ରୀ ଠିକ୍ ଭାବରେ ଗଢ଼େ, ଯେଉଁ ବଢ଼େଇ କାଠକାମ ଠିକ୍ ଢଙ୍ଗରେ କରେ, ଯେଉଁ ସ୍ତ୍ରୀଲୋକ ଆପଣା ରୋଷେଇଘର ଠିକ୍ ରଖେ, ସେ ସମସ୍ତଙ୍କୁ ପ୍ରକୃତ ଅର୍ଥଶାସ୍ତ୍ରବିତ୍ ବୋଲି କହିବା ଉଚିତ । ଏମାନେ ସମଗ୍ର ରାଷ୍ଟ୍ରର ସମ୍ପତ୍ତି ବଢ଼େଇଥାନ୍ତି । ଯେଉଁ ବିଜ୍ଞାନ ଏହାର ଓଲଟା ତାହାକୁ ସାର୍ବଜନୀନ କହି ହେବ ନାହିଁ । ସେଥିରେ ତ ଜଣେ ଲୋକ ଧାତୁ ସଂଗ୍ରହ କରେ ଓ ଅନ୍ୟମାନଙ୍କୁ ତାର ଅଭାବରେ ପକେଇ ତାହା ଉପଭୋଗ କରେ ଏଭଳି କରୁଥିବା ଲୋକେ ତାଙ୍କ ଜମିବାଡ଼ି ଓ ଗାଈଗୋରୁ ଆଦିର ଦାମ ଏତେ ଟଙ୍କା ହେବ ବୋଲି ଭାବି ନିଜକୁ ସେତେ ଟଙ୍କାର ମାଲିକ ବୋଲି ବିଚାରିଥାନ୍ତି । ସେମାନେ ଏ କଥା ବିଚାରନ୍ତି ନାହିଁ ଯେ ପ୍ରକୃତରେ ତାଙ୍କ ଟଙ୍କାର ମୂଲ୍ୟ ହେଉଛି ସେତକ, ଯେତେ ଜମିବାଡ଼ି ଓ ଗୋରୁଗାଈ ସେଥିରେ ମିଳିବ । ସାଙ୍ଗେ ସାଙ୍ଗେ ସେମାନେ ଧାତୁ ଅର୍ଥାତ୍ ଟଙ୍କା ସଂଗ୍ରହ କରନ୍ତି । ସେମାନେ କି ହିସାବ ବି କରନ୍ତି ଯେ, ସେଥିରେ କେତେ ମୂଲିଆ ମିଳି ପାରିବେ । ଜଣେ ଲୋକଠାରେ ସୁନା ରୁପା ବା ଧାନ ଚାଉଳ ମହଜୁଦ ଅଛି । ଏଭଳି ଲୋକର ଚାକର ଦରକାର ହେବେ, କିନ୍ତୁ ତା ପଡ଼ିଶା ଭିତରୁ କାହାରି ଯଦି ସୁନା ରୁପା ବା ଧାନ ଚାଉଳ ଦରକାର ନଥିବ ତେବେ ତାକୁ ଚାକର ମିଳିବା କଠିନ ହେବ । ତେଣୁ ସେ ଧନୀଲୋକକୁ ନିଜେ ନିଜ ରୋଷେଇ କରିବାକୁ ପଡ଼ିବ, ନିଜ ଲୁଗା ନିଜେ ସିଲେଇ କରିବାକୁ ପଡ଼ିବ ଓ ନିଜ ଜମି ନିଜେ ଚଷିବାକୁ ପଡ଼ିବ । ଏ ଅବସ୍ଥାରେ ତା' ପକ୍ଷରେ ତା'ର ସୁନାର ମୂଲ୍ୟ ତା ବିଲର ହଳଦିଆ ଗୋଡଠୁଁ ବେଶୀ ହେବ ନାହିଁ । ତାର ଅନାଚ୍ଛାଦ୍ୟ ସଢ଼ିଯିବ, କାରଣ ସେ ତା ପଡ଼ୋଶୀଙ୍କଠୁ

ବେଶୀ ଖାଇବ ନାହିଁ । ପରିଣାମ ହେବ ଯେ, ତାଙ୍କୁ ଅନ୍ୟମାନଙ୍କ ଭଳି ମେହେନତ କରି ପେଟ ପୋଷିବାକୁ ପଡ଼ିବ, ଏପରି ଅବସ୍ଥାରେ ବେଶୀ ଲୋକ ସୁନା ରୁପା ଜମା କରିବା ପସନ୍ଦ କରିବେ ନାହିଁ । ଗମ୍ଭୀର ଭାବରେ ଚିନ୍ତା କଲେ ଆମେ ଜାଣି ପାରିବା ଯେ, ଧନ ସଂଗ୍ରହ କରିବାର ଅର୍ଥ ହେଉଛି ଅନ୍ୟ ଲୋକଙ୍କ ଉପରେ କର୍ତ୍ତୃତ୍ୱ ହାସଲ କରିବା, ନିଜ ଆରାମ ପାଇଁ ଚାକର, ବେପାରୀ ବା କାରିଗରର ପରିଶ୍ରମ ଉପରେ କର୍ତ୍ତୃତ୍ୱ ହାସଲ କରିବା । ପୁଣି ପଡ଼ୋଶୀମାନଙ୍କର ଦାରିଦ୍ର୍ୟ ଯେତିକି କମ୍ ବେଶୀ ହେବ ଏ କର୍ତ୍ତୃତ୍ୱ ସେହି ହିସାବରେ ମିଳିବ । ଯଦି ଜଣେ ବଢ଼େଇଦ୍ୱାରା କାମ କରେଇବାକୁ ଚାହୁଁଥିବା ଲୋକ ମାତ୍ର ଜଣେ ଥିବ ତେବେ ସେ ବଢ଼େଇକୁ ଯେତେ ମଜୁରି ମିଳିବ ସେ ସେତିକି ନେଇନେବ । ଯଦି ଏମିତି ଦି ଚାରି ଜଣ ଲୋକ ଥିବେ ତେବେ ତାକୁ ଯେଉଁଠି ବେଶୀ ମଜୁରି ମିଳିବ ସେ ସେଇଠିକି ଯିବ । ଏହାର ସାରାଂଶ ହେଲା ଯେ, ଧନୀ ହେବାର ଅର୍ଥ ହେଉଛି ଯେତେପାରେ ବେଶୀ ଲୋକଙ୍କ ନିଜଠୁଁ ଅଧିକ ଗରିବ ଅବସ୍ଥାରେ ରଖିବା । ଅର୍ଥଶାସ୍ତ୍ରବିତ୍‌ମାନେ ଅନେକ ସମୟରେ ଏ କଥା ଧରିନିଅନ୍ତି ଯେ, ଲୋକଙ୍କୁ ଏଭଳି ଅଭାବରେ ରଖିବା ଦ୍ୱାରା ରାଷ୍ଟ୍ରର ଲାଭ ହୁଏ । ସମସ୍ତେ ସମାନ ହୋଇଯିବେ, ଏ କଥା ତ ହୋଇ ପାରିବନାହିଁ, କିନ୍ତୁ ଅନୁଚିତ ଭାବରେ ଲୋକଙ୍କ ଭିତରେ ଦାରିଦ୍ର୍ୟ ସୃଷ୍ଟି କରିବାଦ୍ୱାରା ଲୋକେ ଦୁଃଖୀ ହୁଅନ୍ତି, ସେମାନଙ୍କର ଅପକାର ହୁଏ । ଦାରିଦ୍ର୍ୟ ଓ ବଡ଼ଲୋକି ସ୍ୱାଭାବିକ ଭାବରେ ଥିଲେହିଁ ରାଷ୍ଟ୍ର ସୁଖୀ ହୁଏ ।

—o—

# ସମ୍ପତ୍ତିର ଶିର ପ୍ରଶିର
## (୨)

ଏହିରୂପେ କୌଣସି ରାଷ୍ଟ୍ର ବିଶେଷରେ ଟଙ୍କା ପଇସାର ଚଳାଚଳ ଶରୀରରେ ରକ୍ତର ସଞ୍ଚାଳନ ପରି ହୋଇଥାଏ । ଶୀଘ୍ର ଶୀଘ୍ର ରକ୍ତ-ସଞ୍ଚାଳନ ହେବା ସ୍ୱାସ୍ଥ୍ୟ ଓ ବ୍ୟାୟାମ ବା ଲଜ୍ଜା ବା ଜ୍ୱରର ସୂଚକ ହୋଇଥାଏ । ପୁଣି ଆଉ ଏକପ୍ରକାରର ରକ୍ତମ ଆଭା କୁଷ୍ଠ ରୋଗର ଚିହ୍ନ ଅଟେ । ପୁଣି ଗୋଟାଏ ଜାଗାରେ ରକ୍ତ ଜମା ହୋଇଯିବା ଦ୍ୱାରା ଯେମିତି ଦେହର କ୍ଷତି ହୋଇଥାଏ ସେହିପରି ଗୋଟାଏ ଜାଗାରେ ଧନ ସଞ୍ଚିତ ହୋଇଯିବା ବି ରାଷ୍ଟ୍ରର ହାନିର କାରଣ ହୋଇଥାଏ ।

ଧରନ୍ତୁ ଗୋଟାଏ ଜାହାଜ ଭାଙ୍ଗିଯିବାରୁ ଦୁଇଜଣ ଖଲାସୀ ଆସି ଗୋଟାଏ ଜନହୀନ ଉପକୂଳରେ ପଡ଼ିଛନ୍ତି । ସେଠି ତାଙ୍କୁ ନିଜେ ମେହନତ କରି ଆପଣା ପାଇଁ ଖାଦ୍ୟ ଦ୍ରବ୍ୟ ଉତ୍ପନ୍ନ କରିବାକୁ ପଡ଼ୁଛି । ଯଦି ଦୁହେଁ ସୁସ୍ଥ ରହି ମିଳିମିଶି କାମ କରିବେ ତ ଭଲ ଘର ତିଆରି କରିପାରିବେ, ଜମି ଉଠିଆ କରି ଚାଷ କରିପାରିବେ ଓ ଭବିଷ୍ୟତ ପାଇଁ କିଛି ସଞ୍ଚୟ ବି କରିପାରିବେ । ଏହାକୁ ଆମେ ଭଲ ସମ୍ପତ୍ତି କହିବା ଓ ଦୁହେଁ ଭଲଭାବରେ କାମ କରିବେ ତ ସେଥିରେ ଦୁହିଁଙ୍କର ଭାଗ ସମାନ ବୋଲି ଧରାଯିବ । ଏହିରୂପେ ଏହାଙ୍କ ପ୍ରତି ଯେଉଁ ବିଜ୍ଞାନ ଖଟିବ ତାହା ହେଉଛି ଯେ, ସେମାନଙ୍କର ଆପଣା ପରିଶ୍ରମର ଫଳ ବାଣ୍ଟି-ନେବା ଅଧିକାର ଅଛି । ଏବେ ଧରନ୍ତୁ କିଛି ଦିନପରେ ଏମାନଙ୍କ ଭିତରୁ ଜଣେ ଅସନ୍ତୁଷ୍ଟ ହେଲା, ସେଥିଯୋଗୁଁ ସେମାନେ ଜମି

ବାଣ୍ଟି କରି ନେଲେ ଓ ନିଜ ନିଜ ପାଇଁ ଭିନ୍ନ ଭିନ୍ନ କାମ କରିବାକୁ ଲାଗିଲେ । ପୁଣି ଧରନ୍ତୁ ଅସଲ ବେଳେ ଜଣେ ବେମାର ପଡ଼ିଲା । ଏପରି ଅବସ୍ଥାରେ ସେ ସ୍ୱଭାବତଃ ଅନ୍ୟ ଜଣଙ୍କୁ ସାହାଯ୍ୟ ପାଇଁ ଡାକିବ । ସେତେବେଳେ ସେ ଜଣଙ୍କ କହିପାରେ ଯେ, ମୁଁ ତମ କାମ କରି ଦେବାକୁ ରାଜି ଅଛି କିନ୍ତୁ ମୋର ସର୍ତ୍ତ ହେଉଛି ଯେ ମୋର ଦରକାର ପଡ଼ିଲେ ତମକୁ ବି ମୋର ଏତିକି କାମ କରିଦେବାକୁ ପଡିବ । ତମକୁ ଏ କଥା ଲେଖିଦେବାକୁ ହେବ ଯେ, ତମ ବିଲରେ ମୁଁ ଯେତେଘଣ୍ଟା କାମ କରିବି, ଦରକାର ପଡ଼ିଲେ ତେମେ ବି ମୋ ବିଲରେ ସେତିକି ଘଣ୍ଟା ଖଟି ଆସିବ ଏ କଥା ବି ଧରନ୍ତୁ ଯେ, ସେ ରୋଗୀର ରୋଗ ବହୁତ ଦିନ ଲାଗି ରହିଲା ଓ ପ୍ରତ୍ୟେକ ଥର ତାକୁ ସେ ଲୋକକୁ ଏମିତି ଏକରାର-ନାମା ଲେଖି ଦେବାକୁ ପଡ଼ିଲା । ଏବେ ଏ ରୋଗୀ ଭଲ ହୋଇ-ଗଲେ ସେ ଦୁହିଁଙ୍କର ସ୍ଥିତି କ'ଣ ହେବ ? ଆମେ ଦେଖିବା ଯେ ଉଭୟେ ପୂର୍ବାପେକ୍ଷା ଦରିଦ୍ର ହୋଇଯାଇଛନ୍ତି । କାରଣ ସେ ରୋଗୀ ଯେତେଦିନଯାଏ ଖଟରେ ପଡ଼ି ରହିଲା ସେତେଦିନଯାଏ ସେ ତା' ନିଜ କାମରୁ କିଛି ଲାଭ ପାଇଲା ନାହିଁ । ଯଦି ଆମେ ଏକଥା ଧରି ନେଉଁ ଯେ, ସେ ଅନ୍ୟ ଜଣକ ଖୁବ୍ ପରିଶ୍ରମୀ, ତଥାପି ଏ ତ ପକ୍କା କଥା ଯେ, ସେ ତାର ଯେତେକ ସମୟ ସେ ରୋଗୀର ଜମିରେ ଲଗେଇଲା ସେତିକ ନିଜ ଜମିରେ ଲଗେଇ ପାରିଲା ନାହିଁ । ଫଳରେ, ଉଭୟଙ୍କର ମିଶି ଯେତେ ସମ୍ପତ୍ତି ହେବାର କଥା ତା'ଠୁଁ ଊଣା ହୋଇଗଲା ।

କେବଳ ଏତିକି ନୁହେଁ, ଦୁହିଁଙ୍କ ସଂପର୍କ ବି ବଦଳିଗଲା । ରୋଗୀ ଜଣକ ଅନ୍ୟର ଖାତକ ହୋଇଗଲା । ଏବେ ସେ ନିଜର

ମେହନତ୍ ଦେଲେ, ମୂଲ ଲାଗିଲେ ଯାଇ ତାର ଖୋରାକ ପାଇପାରିବ । ଏବେ ଧରନ୍ତୁ ସେ ସୁସ୍ଥ ଲୋକ ଜଣକ ସେ ରୋଗୀକି ଏକରାରନାମାକୁ କାମରେ ଲଗେଇବାକୁ ଠିକ୍ କଲା । ଏପରି କରିବା ଦ୍ୱାରା ସେ ପୂର୍ଣମାତ୍ରାରେ ବିଶ୍ରାମ ନେଇପାରେ, ଅଳସୁଆ ହୋଇପାରେ । ସେ ଇଚ୍ଛାକଲେ ବେମାରିରୁ ଉଠିଥିବା ଲୋକଟିଙ୍କୁ ଅନ୍ୟ ଏକରାରନାମା ବି ଲେଖେଇ ନେଇପାରେ । ଏଥିରେ କିଛି ବେଆଇନ କାମ ହେଲା ବୋଲି କେହି କହି ପାରିବନାହିଁ । ଏବେ ସେଠିକି କେହି ବିଦେଶୀ ଆସିଲେ ଦେଖିବେ ଯେ ଜଣେ ଧନୀ ହୋଇଗଲାଣି ଓ ଅନ୍ୟ ଜଣକ ବେମାର ପଡ଼ୁଛି । ଜଣେ ମୌଜମଜଲିସ୍ କରୁଛି, ଅଳସଭାବରେ ଦିନ କଟାଉଛି, ଅନ୍ୟ ଜଣକ ମୂଲ ଲାଗି ମଧ୍ୟ କଷ୍ଟରେ ଦିନ କଟାଉଛି । ଏ ଉଦାହରଣରୁ ପାଠକ ଦେଖି ପାରିବେ ଯେ, ଅନ୍ୟଙ୍କ କାମ ଆଦାୟ କରିବାର ଅଧିକାରର ପରିଣାମ ଏଯା ହୁଏ ଯେ ବାସ୍ତବିକ ସଂପତ୍ତି ଊଣା ହୋଇଯାଏ । ଏବେ ଅଉ ଏକ ଉଦାହରଣ ଧରନ୍ତୁ । ତିନିଜଣ ଲୋକ ମିଶି ଗୋଟିଏ ରାଜ୍ୟ ଗଢ଼ିଲେ ଓ ତିନିହେଁ ଭିନ୍ନ ଭିନ୍ନ ରହିଲେ । ପ୍ରତ୍ୟେକେ ଭିନ୍ନ ଭିନ୍ନ ଏପରି ଫସଲ ଉପୁଜେଇଲେ ଯାହା ସମସ୍ତଙ୍କ କାମରେ ଆସିବ । ଧରନ୍ତୁ ଏହାଙ୍କ ଭିତରୁ ଜଣେ ଲୋକ ଅନ୍ୟମାନଙ୍କର ସମୟ ବଞ୍ଚାଇବା ପାଇଁ ଜଣକ ମାଲ ଅନ୍ୟ ନିକଟରେ ପହଞ୍ଚେଇଦେବା ଭାର ନେଲା ଓ ତାହା ବଦଳରେ ଖାଦ୍ୟ ଶସ୍ୟ ନେଲା । ଏ ଲୋକଟି ଠିକ୍‌ଭାବରେ ମାଲ ନେବା ଆଣିବା କରିବ ତ ସମସ୍ତଙ୍କର ଲାଭ ହେବ । କିନ୍ତୁ ଧରନ୍ତୁ ଏ ଜଣକ ମାଲ ନେଇଗଲା ବେଳେ ଚୋରି କଲା ଓ ପରେ ଖୁବ୍ ଅଭାବ ପଡ଼ଲା ବେଳକୁ ଏ ଦଲାଲ ସେହି ଚୋରି ଶସ୍ୟକୁ ବହୁତ ମହଙ୍ଗା ଦାମରେ ତାଙ୍କୁ ବିକିଲା । ଏମିତି କରି କରି ସେ ଲୋକ

ସେ ଗୃହୀ ଦୁଇ ଜଣଙ୍କୁ ଭିକାରୀ କରିଦେଲା ଓ ଶେଷକୁ ଆପଣା ମୂଲିଆ ରୂପେ ରଖିଲା ।

ଉପରୋକ୍ତ ଦୃଷ୍ଟାନ୍ତରେ ସ୍ପଷ୍ଟ ଅନ୍ୟାୟ ରହିଛି କିନ୍ତୁ ଆଜିକାର ବେପାରୀମାନଙ୍କର ଅବସ୍ଥା ଏୟା । ଆମେ ଯା'ବି ଦେଖି ପାରିବା ଯେ ଏ ଗୃହୀ କାରବାର ପରେ ତିନି ଜଣଙ୍କର ସମ୍ପତ୍ତିକୁ ମୋଟ କଲେ ସେ ଲୋକଟି ସତ ରହିଥିଲେ ଯେତେ ହୋଇଥାନ୍ତା ତା'ଠୁଁ କମ୍ ହେବ । ଗୃହୀ ଦୁଇଜଣଙ୍କର କାମ ଊଣା ହେଲା । ଆବଶ୍ୟକ ଜିନିଷ ନ ମିଳିବାରୁ ଆପଣା ପରିଶ୍ରମର ପୂରା ଫଳ ସେମାନେ ପାଇଲେ ନାହିଁ । ସାଙ୍ଗେ ସାଙ୍ଗେ ସେ ଗୃହୀର ଦଖଲ ହାତରେ ଯେଉଁ ଗୃହୀର ମାଲ ଜମା ହେଲା ତାର ବି ପୂରା ଓ ଭଲ ବ୍ୟବହାର ହେଲା ନାହିଁ । ଏହିରୂପେ ଆମେ ବୀଜଗଣିତ ପରି ସ୍ପଷ୍ଟ ହିସାବ କରି କୌଣସି ଏକ ରାଷ୍ଟ୍ରର ସମ୍ପଦ ଯାଞ୍ଚ କରିପାରିବା । ତାକୁ ଧନୀ କୁହାଯିବ କି ନାହିଁ ତାହା ତାର ସମ୍ପତ୍ତି ହାସଲ କରିବାର ଉପାୟ ଉପରେ ନିର୍ଭର କରୁଛି । କୌଣସି ରାଷ୍ଟ୍ର ହାତରେ ଏତେ ପଇସା ଅଛି ବୋଲି ସେ ଧନୀ, ଏ କଥା କହି ହେବ ନାହିଁ । କୌଣସି ଲୋକ ନିକଟରେ ଧନ ସମ୍ପଦ ଥିବା ଯେମିତି ତାର ଅଧ୍ୟବସାୟ, ଚତୁରୀ ଓ ଉନ୍ନତିଶୀଳତାର ଲକ୍ଷଣ ହୋଇପାରେ, ସେମିତି ତାହା ହାନିକର ଭୋଗବିଳାସ, ଅତ୍ୟାଚାର ଓ ଜାଲଫରେବର ସୂଚନା ବି ହୋଇପାରେ । କେବଳ ନୀତିହିଁ ଆମକୁ ଏଭଳି ହିସାବ କରିବା ଶିଖାଏ । ଗୋଟାଏ ପ୍ରକାରର ଧନ ଦଶ ଗୁଣା ହୋଇଯାଏ । ଆଉ ଗୋଟାଏ ପ୍ରକାରର ଧନ ଜଣକ ହାତକୁ ଆସିଲା ବେଳକୁ ଦଶ ଗୁଣା ଧନ ନାଶ କରିଦିଏ ।

ତାତ୍ପର୍ଯ୍ୟ ହେଉଛି ଯେ, ନୀତ-ଅନୀତ ବିଚାର ନ କରି ଧନ ଅର୍ଜିବାର ନିୟମ ଗଢ଼ିବାଟା କେବଳ ମଣିଷର ଅହଙ୍କାରର ହିଁ ସୂଚନା ଦେଇଥାଏ । ଶସ୍ତାରୁ ଶସ୍ତାରେ କିଣି ମହଙ୍ଗାରୁ ମହଙ୍ଗାରେ ବିକିବା ଭଳି ଲଜ୍ଜାକର କଥା ମଣିଷ ପକ୍ଷରେ ଆଉ କିଛି ନାହିଁ । "ଶସ୍ତାରୁ ଶସ୍ତା" ରେ କିଣିବା ତ ଠିକ୍, କିନ୍ତୁ ଶସ୍ତା ହେଲା କେମିତି ? ନିଆଁ ଲାଗି କାଠ ଜଳି ଯିବାରୁ ଯେଉଁ କୋଇଲା ହେଲା ତାହା ଶସ୍ତା ହୋଇପାରେ । ଭୂମିକମ୍ପ ଯୋଗୁଁ ଭାଙ୍ଗି ପଡ଼ିଥିବା ଘରର ଇଟା ଶସ୍ତା ହୋଇପାରେ । କିନ୍ତୁ ସେଥିଯୋଗୁଁ କେହି ଏ କଥା କହିବାକୁ ସାହସ କରିବ ନାହିଁ ଯେ ଅଗ୍ନିକାଣ୍ଡ ଓ ଭୂମିକମ୍ପର ଦୁର୍ଘଟଣାଗୁଡ଼ିକ ଲୋକଙ୍କପାଇଁ ଲାଭ-ଜନକ । ସେମିତି 'ମହଙ୍ଗାରୁ ମହଙ୍ଗାରେ ବିକିବା' ଠିକ୍, କିନ୍ତୁ ମହଙ୍ଗା ହେଲା କେମିତି ? ଆଜି ଆପଣଙ୍କୁ ରୁଟିର ଭଲ ଦାମ୍ ମିଳିଲା । କିନ୍ତୁ ଏ ଦାମ୍ କଣ ଆପଣ କୌଣସି ମରଣାପନ୍ନ ଲୋକର ଶେଷ ପାହୁଲାଟି ନେଇ ସୃଷ୍ଟି କରେଇଛନ୍ତି ନା ଆପଣ ସେ ରୁଟି କୌଣସି ଏମିତିକା ମହାଜନଙ୍କୁ ଦେଇଛନ୍ତି ଯେ କାଲି ଆପଣଙ୍କର ସର୍ବସ୍ୱ ହରିନେବ ବା କୌଣସି ଏପରି ସିପେହୀଙ୍କୁ ବିକିଛନ୍ତି ଯେ ଆପଣଙ୍କ ବ୍ୟାଙ୍କ ଉପରେ ଆକ୍ରମଣ କରିବ ? ଏ କଥା ସମ୍ଭବ ଯେ, ଆପଣ ଏଇକ୍ଷଣି ଏଥି ଭିତରୁ ଗୋଟିଏ ହେଲେ ପ୍ରଶ୍ନର ଜବାବ ଦେଇ ପାରିବେ ନାହିଁ, କାରଣ ଆପଣଙ୍କର ସେ ବିଷୟରେ ଜ୍ଞାନ ନାହିଁ । କିନ୍ତୁ ଆପଣଙ୍କ ରୁଟି ଆପଣ ଉଚିତ ମୂଲ୍ୟରେ, ନୀତିପୂର୍ବକ ବିକିଛନ୍ତି କି ନାହିଁ ତାହା ଆପଣ କହି ପାରିବେ । ଠିକ୍ ନ୍ୟାୟ ହେବା ପ୍ରତି ଖିଆଲ ରଖିବା ବି ଆବଶ୍ୟକ । ଆପଣଙ୍କ କାମ ଦ୍ୱାରା କାହାରିକୁ ଦୁଃଖ

ନ ହେଉ, ଏତକ ଜାଣିବା ଓ ସେ ଅନୁସାରେ ଚାଲିବା ଆପଣଙ୍କର କର୍ତ୍ତବ୍ୟ ।

ଆମେ ଦେଖି ସାରିଲୁ ଯେ, ଧନ ଦ୍ୱାରା ଅନ୍ୟ ଲୋକର ପରିଶ୍ରମ ପାଇପାରିବା ଉପରେ ହିଁ ତାର ମୂଲ୍ୟ ନିର୍ଭର କରୁଛି । ଯଦି ପରିଶ୍ରମ ମାଗଣାରେ ମିଳି ପାରିବ ତେବେ ପଇସାର ଆବଶ୍ୟକତା ନାହିଁ । ବିନା ପଇସାରେ ବି ଲୋକଙ୍କର ପରିଶ୍ରମ ପାଇ ହେବ ତାହାର ଉଦାହରଣ ଅଛି ଓ ଆମେ ତ ପୂର୍ବରୁ ଏହାର ଉଦାହରଣ ଦେଖି ସାରିଛୁ ଯେ, ଧନବଳ ଅପେକ୍ଷା ନୀତି-ବଳ ବେଶୀ କାମ କରେ । ଆମେ ଏହା ବି ଦେଖି ସାରିଛୁ ଯେ, ଯେଉଁଠି ଧନ କାମ ଦିଏ ନାହିଁ ସେଠି ସଦ୍‌ଗୁଣ କାମ ଦେଖାଏ । ଇଂଲଣ୍ଡରେ ଅନେକ ଜାଗାରେ ଲୋକଙ୍କୁ ଧନର ମୋହରେ ଭୁଲେଇ ହେବ ନାହିଁ ।

ଯଦି ଆମେ ଧରି ନେବା ଯେ, ଲୋକଙ୍କୁ କାମ କରେଇବାର ଶକ୍ତିହିଁ ହେଉଛି ଧନ, ତେବେ ଆମେ ଏହା ବି ଦେଖିପାରିବା ଯେ ସେ ଲୋକେ ଯେତକ ପରିମାଣରେ ଚତୁର ଓ ନୀତିମାନ ହେବେ ସେହି ପରିମାଣରେ ଧନ ବଢିବ । ଏହିରୂପେ ବିଚାର କଲେ ଆମେ ଜାଣି ପାରିବା ଯେ, ପ୍ରକୃତ ଧନ ହେଉଛି ନିଜେ ମଣିଷ, ସୁନାରୁପା ନୁହେଁ । ଧନ ମଣିଷର ହୃଦୟ ଭିତରେ ଖୋଜିବାକୁ ହେବ, ମାଟିତଳେ ନୁହେଁ । ଏ କଥା ଠିକ୍ ହୋଇଥିଲେ ଅର୍ଥଶାସ୍ତ୍ରର ଖାଣ୍ଟି ନିୟମ ଏହା ହେଲା ଯେ ଯେମିତି ହେଉ ପଛେ ଲୋକଙ୍କର ତନ, ମନ ଓ ମାନ ସୁସ୍ଥ ରଖିବାକୁ ହେବ । ଏମିତି ସମୟ ବି ଆସିପାରେ ଯେତେବେଳେ ଇଂଲଣ୍ଡ ଗୋଲକୁଣ୍ଡାର ହୀରା ଦ୍ୱାରା ଗୋଲାମମାନଙ୍କୁ ସଜେଇ ଆପଣା

ବୈଭବ ପ୍ରଦର୍ଶନ କରିବା ପରିବର୍ତ୍ତେ ଗ୍ରୀସଦେଶର ଜଣେ ପ୍ରସିଦ୍ଧ ଲୋକଙ୍କ କଥା ଅନୁସାରେ ଆପଣାର ନୀତିମାନ ମହାପୁରୁଷମାନଙ୍କୁ ଦେଖେଇ କହିବ—

"ଏହିମାନେ ମୋର ଧନ ।"

---

## ନ୍ୟାୟ

### (୩)

ଖ୍ରୀଷ୍ଟପୂର୍ବ କେତେ ଶତାବ୍ଦୀ ତଳେ ଜଣେ ଇହୁଦୀ ବେପାରୀ ଥିଲେ । ତାଙ୍କ ନାମ ଥିଲା ସୋଲୋମନ । ସେ ଧନ ଓ ଯଶ ପୂର୍ଣ୍ଣମାତ୍ରାରେ ଅର୍ଜିଥିଲେ । ତାଙ୍କର ବଚନ ସବୁ ଏବେ ବି ୟୁରୋପରେ ଚଳୁଛି । ଭେନିସ୍‌ର ଲୋକେ ତାଙ୍କୁ ଏତେ ମାନୁଥିଲେ ଯେ ସେମାନେ ତାଙ୍କର ଏକ ମୂର୍ତ୍ତି ସ୍ଥାପନ କଲେ । ତାଙ୍କ ବଚନ ତ ଆଜିକାଲି ମନେ ରଖା ହେଉଛି କିନ୍ତୁ ତାକୁ ଆଚରଣରେ ପାଳିବା ଲୋକ ବହୁତ କମ ଅଛନ୍ତି । ସେ କହୁଛନ୍ତି—'ଯେଉଁ-ମାନେ ମିଛ କହି ପଇସା କମାନ୍ତି ସେମାନେ ଅହଂକାରୀ ଓ ତାହା ତାଙ୍କର ମୃତ୍ୟୁର ଲକ୍ଷଣ ।' ଆଉ ଜାଗାଏ ସେ କହୁଛନ୍ତି—'ପାପ-ଧନରେ କିଛି ଲାଭ ନାହିଁ । ସତ୍ୟ ମୃତ୍ୟୁରୁ ରକ୍ଷା କରେ ।' ଏ ଦୁଇଟି ବଚନରେ ସୋଲୋମନ ଦେଖେଇଛନ୍ତି ଯେ ଅନ୍ୟାୟରେ ଅର୍ଜିତ ଧନର ପରିଣାମ ମୃତ୍ୟୁ । ଏ ଯୁଗରେ ଏତେ ମିଛ କୁହାଯାଉଛି ଓ ଏତେ ଅନ୍ୟାୟ କରାଯାଉଛି ଯେ ଆମେ ତାକୁ ସାଧାରଣତଃ ମିଛ ବୋଲି କହିପାରୁ ନାହୁଁ । ଯେମିତି ମିଥ୍ୟା

ବିଜ୍ଞାପନ ଦେବା, ଆପଣା ମାଲରେ ଲୋକଙ୍କୁ ଭ୍ରମରେ ପକେଇବା ଭଳି "ଲେବଲ" ଲଗେଇବା ଇତ୍ୟାଦି ।

ତା' ପରେ ସେ ବୁଦ୍ଧିମାନ କହିଛନ୍ତି—'ଯେ ଧନ ବଢ଼େଇବା ପାଇଁ ଗରିବଙ୍କୁ ଦୁଃଖ ଦିଏ ସେ ଶେଷକୁ ଦ୍ୱାର ଦ୍ୱାର ଭିକ ମାଗିବ ।' ପୁଣି କହିଛନ୍ତି—'ଗରିବଙ୍କୁ କଷ୍ଟ ଦିଅ ନାହିଁ; କାରଣ ସେମାନେ ଗରିବ । ବେପାରରେ ଦୁଃଖୀ ଲୋକଙ୍କ ଉପରେ ଜୁଲୁମ କର ନାହିଁ । କାରଣ ଯେ ଗରିବଙ୍କୁ କଷ୍ଟ ଦେବ ଭଗବାନ ତାକୁ କଷ୍ଟ ଦେବେ ।' କିନ୍ତୁ ଆଜିକାଲି ବେପାରରେ ମଲା ଉପରେ ହିଁ ଖଣ୍ଡାପାହାର ଦିଆ ହୁଏ । କେହି ବିପଦରେ ପଡ଼ିଗଲେ ଆମେ ତା' ବିପଦରୁ ଲାଭ ଉଠେଇବାକୁ ତିଆର ହୋଇଯାଉଁ । ଡକେଇତ ତ ବଡ଼ଲୋକଙ୍କ ଘରେ ଲୁଟ୍ କରନ୍ତି, କିନ୍ତୁ ବେପାରରେ ତ ଗରିବଙ୍କୁ ହିଁ ଲୁଟ କରିଯାଏ ।

ତାପରେ ସୋଲୋମନ କହିଛନ୍ତି—"ଧନୀ ଓ ଦରିଦ୍ର ଉଭୟ ସମାନ । ତାଙ୍କୁ ଭଗବାନ ଜନ୍ମ ଦେଇଛନ୍ତି । ଭଗବାନ ତାଙ୍କୁ ଜ୍ଞାନ ଦିଅନ୍ତି ।" ଧନୀର ଦରିଦ୍ର ବିନା ଓ ଦରିଦ୍ରର ଧନୀ ବିନା ଚଳେ ନାହିଁ । ଦୁହିଁଙ୍କର ଦୁହିଁଙ୍କୁ ସବୁବେଳେ ଦରକାର ପଡ଼ି-ଥାଏ, ସେଥିଯୋଗୁଁ କେହି କାହାକୁ ଉଚ୍ଚ ବା ନୀଚ କହିପାରିବ ନାହିଁ । କିନ୍ତୁ ଏବେ ଏ ଦୁହେଁ ନିଜ ସମାନତାକୁ ଭୁଲି ଯାଉଛନ୍ତି ଓ ଯେତେବେଳେ ଭଗବାନ ହିଁ ତାଙ୍କର ଜ୍ଞାନଦାତା ବୋଲି ତାଙ୍କର ହୋସ୍ ରହୁନାହିଁ ସେତେବେଳେ ତାର ପରିଣାମ ବିପରୀତ ହେଉଛି ।

ଧନ ନଈଭଳି । ନଈ ସବୁବେଳେ ସମୁଦ୍ର ଆଡ଼କୁ ଅର୍ଥାତ୍ ତଳଆଡ଼କୁ ବହେ । ସେହିପରି ଧନର ବି ଯେଉଁଠି ଆବଶ୍ୟକତା

ଥିବ ତାହା ସେଠିକି ଯିବା ଉଚିତ । କିନ୍ତୁ ଯେମିତି ନଈର ଗତି ବଦଳିପାରେ ସେମିତି ଧନର ଗତି ବି ବଦଳିପାରେ । କେତେ ନଈ ଏଣେତେଣେ ବହିଯାନ୍ତି ଓ ତାର ଆଖପାଖରେ ବହୁତ ପାଣି ଜମି ରହି ଦୂଷିତ ବାଷ୍ପ ସୃଷ୍ଟି କରେ । ଏହି ନଈରେହିଁ ବନ୍ଧ ବାନ୍ଧି ତାର ପାଣିକୁ ଯୁଆଡ଼େ ଦରକାର ସେଆଡ଼େ ନେଲେ ସେହି ପାଣି, ଜମିକୁ ଉର୍ବର ଓ ଆଖପାଖର ବାୟୁକୁ ନିର୍ମଳ କରେ । ସେହିପରି ଧନର ଯଥେଚ୍ଛା ବ୍ୟବହାର ଦ୍ୱାରା ମନ୍ଦତା ବଢ଼େ, ଦାରିଦ୍ର୍ୟ ବଢ଼େ । ମୋଟ ଉପରେ ସେ ଧନ ବିଷତୁଲ୍ୟ ହୋଇଯାଏ । କିନ୍ତୁ ସେହି ଧନର ଗତି ନିଶ୍ଚିତ କରିଦେଲେ, ତାକୁ ନିୟମପୂର୍ବକ ବ୍ୟବହାର କଲେ, ବନ୍ଧା ହୋଇଥିବା ନଈଭଳି ତାହା ସୁଖପ୍ରଦ ହୋଇଯାଏ ।

ଅର୍ଥଶାସ୍ତ୍ରବିଦ୍‌ମାନେ ଧନର ଗତି ନିୟନ୍ତ୍ରଣର ନିୟମକୁ ବିଲ୍‌କୁଲ୍‌ ଭୁଲିଯାନ୍ତି । ତାଙ୍କର ଶାସ୍ତ୍ର ହେଉଛି କେବଳ ଧନ ସଂଗ୍ରହ କରିବାର ଶାସ୍ତ୍ର । କିନ୍ତୁ ଧନ ତ ଅନେକପ୍ରକାର ସଂଗ୍ରହ କରାଯାଇପାରେ । ଗୋଟାଏ ଯୁଗ ଥିଲା ଯେତେବେଳେ ୟୁରୋପରେ ଧନୀଲୋକଙ୍କୁ ବିଷ ଦେଇ ଲୋକେ ତାଙ୍କ ଧନରେ ନିଜେ ଧନୀ ହେଉଥିଲେ । ଆଜିକାଲି ଗରିବଙ୍କ ପାଇଁ ଯେଉଁ ଖାଦ୍ୟ-ପଦାର୍ଥ ତିଆରି ହୁଏ ସେଥିରେ ବେପାରୀମାନେ ଭେଜାଲ ମିଶାନ୍ତି । ଯଥା—ଦୁଧରେ ଟାଙ୍ଗଣା, ଅଟାରେ ଆଳୁ, କଫିରେ ଚିକରୀ, ମଖନରେ ଚର୍ବି ଇତ୍ୟାଦି । ଏହା ବି ବିଷ ଦେଇ ଧନୀ ହେବାଭଳି କଥା । କ'ଣ ଏହାକୁ ଆମେ ଧନୀ ହେବାର କଳା ବା ବିଜ୍ଞାନ କହିପାରିବା ?

କିନ୍ତୁ ଏ କଥା ଧରିନେବା ଉଚିତ ନୁହେଁ ଯେ ଅର୍ଥ-ଶାସ୍ତ୍ରବିଦ୍‌ମାନେ ବିଶୁଦ୍ଧ ଲୁଟ ଦ୍ୱାରା ଧନୀ ହେବା କଥା ହିଁ

କହନ୍ତି । ତାଙ୍କ ଆଡ଼ୁ ଏ କଥା କହିବା ଠିକ୍ ହେବ ଯେ; ତାଙ୍କର ଶାସ୍ତ୍ର ହେଉଛି ଆଇନସଙ୍ଗତ ଉପାୟରେ ଧନୀ ହେବାର ଶାସ୍ତ୍ର । କିନ୍ତୁ ଏ ଯୁଗରେ ଯ୍ବା ବି ହେଉଛି ଯେ, ଅନେକ କଥା ଆଇନ-ସଙ୍ଗତ ହେଲେ ବି ନ୍ୟାୟ ବୁଦ୍ଧିର ବିପରୀତ । ଏଥିଯୋଗୁଁ ନ୍ୟାୟପୂର୍ବକ ଧନ ଅର୍ଜନ କରିବାଟାକୁହିଁ ଠିକ୍ ବାଟ ବୋଲି କୁହାଯାଇପାରିବ । ଆଉ ଯଦି ନ୍ୟାୟ ବାଟରେ ହିଁ ପଇସା କମେଇବା କଥାଟା ଠିକ୍ ହୁଏ ତେବେ ନ୍ୟାୟ ଅନ୍ୟାୟ ବିବେକ ଉତ୍ପନ୍ନ କରିବା ମଣିଷର ପ୍ରଥମ କାମ ହେବା ଉଚିତ । କେବଳ ଦେଣନେଣର ବ୍ୟବସାୟ ଗତ ନିୟମ ଦ୍ୱାରା କାମ ଚଲେଇବା ବା ବେପାର ଚଲେଇବା ଯଥେଷ୍ଟ ନୁହେଁ । ଏ କଥା ମାଛ, ଗଧିଆ ଓ ମୂଷା ବି କରନ୍ତି । ବଡମାଛ ସାନ ମାଛକୁ ଖାଇଯାଏ, ମୂଷା ସାନ ସାନ ଜୀବଜନ୍ତୁ ଖାଇଯାଏ ଆଉ ଗଧିଆବାଘ ମଣିଷକୁ ବି ଖାଇଯାଏ । ତାଙ୍କର ଏୟା ନିୟମ, ତାଙ୍କର ଅନ୍ୟ ଜ୍ଞାନ ନାହିଁ । କିନ୍ତୁ ଈଶ୍ବର ମଣିଷକୁ ବିବେକ ଦେଇଛନ୍ତି, ନ୍ୟାୟ ବୁଦ୍ଧି ଦେଇଛନ୍ତି । ତାହାଦ୍ୱାରା ଅନ୍ୟକୁ ଭକ୍ଷଣ କରି, ତାଙ୍କୁ ଠକେଇ ତାଙ୍କୁ ଦାଣ୍ଡରେ ବସେଇ ସେ ଧନୀ ହେବା ଉଚିତ ନୁହେଁ । ଏଭଳି ଅବସ୍ଥାରେ ମୂଲିଆଙ୍କୁ ମୂଲ ଦେବାର ନ୍ୟାୟ କ'ଣ ତାହା ଆମକୁ ଦେଖିବାକୁ ହେବ ।

ଆମେ ପୂର୍ବରୁ କହିସାରିଛୁ ଯେ, ମୂଲିଆ ଆମ ପାଇଁ ଯେତେ ପରିଶ୍ରମ କରିଥିବ ତା'ର ଦରକାର ବେଳେ ଆମେ ତା' ପାଇଁ ସେତିକ ମେହେନତ୍ କରିଦେବାହିଁ ମୂଲିଆଙ୍କର ଉଚିତ ପାରିଶ୍ରମିକ ହେବ । ଯଦି ତାକୁ କମ୍ କାମ ମିଳେ ତ କମ୍, ଯଦି ବେଶୀ ମିଳେ ତ ବେଶୀ ବଦଳ ଆମେ ଦେବା । ଜଣେ ଲୋକର ଜଣେ ମୂଲିଆ ଦରକାର । ତାର କାମ କରିବାକୁ ଦୁ'ଜଣ

ବାହାରିଲେ । ଏବେ ଯେଉଁ ଜଣକ କମ୍ ମଜୁରି ଗ୍ରହିବ ତାକୁ କାମରେ ଲଗାଯିବ ତ ସେ କମ୍ ମୂଲ ପାଇବ । ଯଦି ବେଶୀ ଲୋକଙ୍କର ମୂଲିଆ ଦରକାର ଥିବେ ଓ ଜଣେ ମାତ୍ର ମୂଲିଆ ଥିବ ତେବେ ସେ ଯାହା ଗ୍ରହିବ ସେହି ମୂଲ ତାକୁ ମିଳିବ । ମୂଲ ଯେତେ ହେବା ଉଚିତ ତା'ଠୁଁ ଏହା ପ୍ରାୟ ବେଶୀ ହିଁ ହୋଇଥିବ । ଏ ଦୁଇଟିର ମଝିମଝିକା ଦରହିଁ ଉଚିତ ମୂଲ ।

ଯଦି କୌଣସି ଲୋକ ମତେ କିଛି ଟଙ୍କା ଉଧାର ଦେଇଥିବ ଓ ମୁଁ ତାହା କୌଣସି ଏକ ନିର୍ଦ୍ଦିଷ୍ଟ ସମୟ ପରେ ଫେରେଇ ଦେବାକୁ ଗ୍ରହିବି, ତେବେ ମତେ ତାକୁ ସୁଧ ଦେବାକୁ ପଡ଼ିବ । ସେମିତି କୌଣସି ଲୋକ ଆଜି ମୋ କାମ କରିଦେଲେ ମୁଁ ତା' ପାଇଁ କେବଳ ସେତିକ ନୁହେଁ, ସୁଧ ହିସାବରେ ବରଂ କିଛି ବେଶୀ ପରିଶ୍ରମ କରିଦେବା ଉଚିତ । ଆଜି ମୋ ପାଇଁ କେହି ଘଣ୍ଟାଏ କାମ କରିଦେଲେ ମୋର ତା ପାଇଁ ଘଣ୍ଟାଏ ପାଞ୍ଚମିନିଟ ବା କିଛି ବେଶୀ କାମ କରି ଦେବାକୁ କଥା ଦେବା ଉଚିତ । ଏହି କଥା ପ୍ରତ୍ୟେକ ମୂଲିଆ ପ୍ରତି ଖାଟିବ ବୋଲି ବୁଝିବା ଉଚିତ ।

ଏବେ ଯଦି ମୋ ପାଖକୁ ଦୁ'ଜଣ ମୂଲିଆ ଆସନ୍ତି ଓ ତାଙ୍କ ଭିତରୁ ଯେ କମ୍‌ରେ ରାଜି ହେବ ତାକୁ ମୁଁ କାମରେ ଲଗାଏ ତେବେ ଫଳ ଏୟା ହେବ ଯେ, ଯାହାକୁ ମୁଁ କାମରେ ଲଗେଇବି ସେ ଦରପେଟା ହୋଇ ରହିବ ଓ ଯେ ଅକର୍ମୀ ରହିଲା ସେ ପୂରା ଉପାସ ରହିବ । କିନ୍ତୁ ମୁଁ ଯେଉଁ ଜଣକୁ ରଖିବି ତାକୁ ପୂରା ମଜୁରି ଦେଲେ ବି ଆର ଜଣକ ଅକର୍ମା ରହିବ ସତ, ମାତ୍ର ମୁଁ ଯାହାକୁ କାମରେ ଲଗେଇଲି ସେ ତ ଆଉ ଉପାସ ରହିବ ନାହିଁ ଓ ମୁଁ ମୋର ଟଙ୍କାର ଉଚିତ ବ୍ୟବହାର କଲି ବୋଲି ଧରାଯିବ ।

ପ୍ରକୃତରେ ଦେଖିବାକୁ ଗଲେ ଯେତେବେଳେ ମୂଲିଆଙ୍କୁ କମ୍ ମୂଲ ଦିଆଯାଏ ସେତେବେଳେ ହିଁ ଲୋକେ ଭୋକ ଉପାସରେ ମରନ୍ତି । ମୁଁ ଉଚିତ ମୂଲ ଦେବି ତ ମୋ ପାଖରେ ବୃଥାରେ ଧନ ଜମା ହେବ ନାହିଁ । ମୁଁ ଭୋଗବିଳାସରେ ଟଙ୍କା ଖର୍ଚ୍ଚ କରିବି ନାହିଁ ଓ ମୋ ଯୋଗୁଁ ଦାରିଦ୍ର୍ୟ ବଢ଼ିବ ନାହିଁ । ଯାହାକୁ ମୁଁ ଉଚିତ ମୂଲ ଦେବି ସେ ଅନ୍ୟମାନଙ୍କୁ ଉଚିତ ମୂଲ ଦେବା ଶିଖିବ । ଏହିରୂପେ ନ୍ୟାୟର ସ୍ରୋତ ଶୁଖିଯିବା ପରିବର୍ତ୍ତେ ତାହା ଯେତେ ଯେତେ ବହି ଯାଉଥିବ ତାର ପ୍ରଖରତା ସେତେ ବଢୁଥିବ ଓ ଯେଉଁ ରାଷ୍ଟ୍ରରେ ଏଭଳି ନ୍ୟାୟ ବୁଦ୍ଧି ଥିବ ସେ ସୁଖୀ ହେବ ଓ ଉଚିତ ଭାବରେ ସମୃଦ୍ଧ ହେବ ।

ଏ ବିଚାର ଅନୁସାରେ ଅର୍ଥଶାସ୍ତ୍ରବିଦ୍‌ଙ୍କ କଥା ମିଥ୍ୟା ସାବ୍ୟସ୍ତ ହେଉଛି । ତାଙ୍କର ବକ୍ତବ୍ୟ ହେଉଛି ଯେ, ପ୍ରତିଯୋଗିତା ଯେତିକି ବଢ଼ିବ ରାଷ୍ଟ୍ର ସେତିକି ସମୃଦ୍ଧ ହେବ । ବାସ୍ତବରେ ଏ ବିଚାର ଭ୍ରାନ୍ତ । ପ୍ରତିଯୋଗିତାର ଉଦ୍ଦେଶ୍ୟ ହେଉଛି ମୂଲ କମେଇବା ।

ଏହାଦ୍ୱାରା ଧନୀ ବେଶୀ ଧନ ଜମା କରୁଛି ଓ ଗରିବ ବେଶୀ ଗରିବ ହୋଇ ଯାଉଛି । ଏଭଳି ପ୍ରତିଯୋଗିତା ଫଳରେ ଶେଷକୁ ରାଷ୍ଟ୍ରର ବିନାଶ ଘଟିବାର ସମ୍ଭାବନା ଅଛି । ପ୍ରତ୍ୟେକ ଲୋକଙ୍କୁ ତାର ଯୋଗ୍ୟତା ଅନୁସାରେ ମୂଲ ମିଳିବ ବୋଲି ନିୟମ ହେବା ଉଚିତ । ଏଥିରେ ବି ପ୍ରତିଯୋଗିତା ହେବ କିନ୍ତୁ ଏ ପ୍ରତିଯୋଗିତା ଫଳରେ ଲୋକେ ସୁଖୀ ଓ ଚତୁର ହେବେ । କାରଣ, କାମ ପାଇବାପାଇଁ ଆଉ ନିଜର ମୂଲର ଦର କମ କରିବା ଦରକାର ହେବନାହିଁ; ମାତ୍ର ନିଜର କର୍ମଦକ୍ଷତା ବଢ଼େଇବାକୁ ହେବ । ଏଥିଯୋଗୁଁ ଲୋକେ ସରକାରୀ ଚାକିରି ପାଇବାକୁ ଉତ୍ସୁକ ଥା'ନ୍ତି ।

ସେଠି ଶ୍ରେଣୀ ଅନୁସାରେ ଦରମା ସ୍ଥିର ହୋଇଥାଏ, କେବଳ କାର୍ଯ୍ୟ ଦକ୍ଷତାରେ ପ୍ରତିଯୋଗୀତା ଚାଲେ । ଚାକିରି ପାଇଁ ଦରଖାସ୍ତ କରିବା ଲୋକ କମ ଦରମା ନେବାକୁ ରାଜି ବୋଲି କହେ ନାହିଁ, ମାତ୍ର ତା'ଠାରେ ଅନ୍ୟମାନଙ୍କ ଅପେକ୍ଷା ବେଶୀ ଦକ୍ଷତା ଅଛି ବୋଲି ଦେଖାଇ ଥାଏ । ସୈନ୍ୟ ଓ ନୌବାହିନୀରେ ମଧ୍ୟ ଏଇ ନିୟମ ପାଳିତ ହୋଇଥାଏ ଓ ସେଥିଯୋଗୁଁ ଏସବୁ ବିଭାଗରେ ଗଣ୍ଡଗୋଳ ଓ ଅନୀତି ସାଧାରଣତଃ କମ୍ ଦେଖା-ଯାଇଥାଏ । ବେପାରୀମାନଙ୍କ ଭିତରେ ହିଁ କଳୁଷିତ ପ୍ରତିଯୋଗୀତା ଚାଲିଛି ଓ ତାର ପରିଣାମ ସ୍ୱରୂପ ଠକାମି, ଦଗା, ଫେରେବ, ଚୋରି ଇତ୍ୟାଦି ଅନୀତି ବଢ଼ି ଯାଇଛି । ଯେଉଁ ମାଲ୍ ଯାହା ତିଆରି ହେଉଛି ତାହା ଖରାପ ଓ ପଚାସଢ଼ା ହେଉଛି । ବେପାରୀ ଚାହୁଁଛି କେମିତି ଖାଇଯିବ, ମୂଲିଆ ଚାହୁଁଛି କେମିତି ଠକିଦେବ ଓ ଗରାଖ ଚାହୁଁଛି କେମିତି ମଝିରେ ସୁବିଧା ମାରିନେବ ! ଏମିତି ଆଚରଣ ଖରାପ ହେଉଛି, ଲୋକଙ୍କ ଭିତରେ ଖଟ ଖଟ ଲାଗି ରହୁଛି, ଦାରିଦ୍ର୍ୟ ବଢ଼ୁଛି; ଧର୍ମଘଟ ବଢ଼ିଯାଉଛି; ମହାଜନ ଠକ ହୋଇ ଯାଉଛନ୍ତି ଓ ଗ୍ରାହକ ନୀତି ପାଳନ କରୁ ନାହାନ୍ତି । ଗୋଟାଏ ଅନ୍ୟାୟରୁ ଅନ୍ୟ ଅନେକ ଅନ୍ୟାୟ ଉତ୍ପନ୍ନ ହୋଇ-ଥାଏ । ଶେଷକୁ ମହାଜନ, ବେପାରୀ ଓ ଗରାଖ, ସମସ୍ତେ ଦୁଃଖ ଭୋଗନ୍ତି ଓ ସତ୍ୟାନାଶ ହୁଅନ୍ତି । ଯେଉଁ ରାଷ୍ଟ୍ରରେ ଏଭଳି ପ୍ରଥା ଚଳେ ସେ ଶେଷକୁ ଦୁଃଖ ଭୋଗେ ଓ ଶେଷକୁ ତାର ଧନହିଁ ବିଷଭଳି ହୋଇଯାଏ ।

ସେଥିଯୋଗୁ ଜ୍ଞାନୀମାନେ କହି ଯାଇଛନ୍ତି—

"ଯେଉଁଠି ଧନ ହିଁ ପରମେଶ୍ୱର ସେଠି ପ୍ରକୃତ ପରମେ-ଶ୍ୱରଙ୍କୁ କେହି ପୂଜେ ନାହିଁ ।"

ଇଂରେଜମାନେ ତ ମୁହଁରେ କହନ୍ତି ଯେ, ଧନ ଓ ଈଶ୍ୱରଙ୍କ ଭିତରେ ବିରୋଧ ଅଛି, ଗରିବର ଘରେ ହିଁ ଈଶ୍ୱର ବାସ କରନ୍ତି, କିନ୍ତୁ କାର୍ଯ୍ୟରେ ସେମାନେ ଧନକୁ ସର୍ବୋଚ୍ଚ ପଦ ଦିଅନ୍ତି । ନିଜ ଦେଶର ଧନୀଲୋକଙ୍କୁ ସୁମାରି କରି ନିଜକୁ ସୁଖୀ ମନେ କରନ୍ତି ଓ ଯାହାକୁ ଶିଖି ଲୋକେ ଧନୀ ହୋଇଯିବେ ଶୀଘ୍ର ଶୀଘ୍ର ଧନ ଉପାର୍ଜନ କରିବାର ସେହିଭଳି ନିୟମମାନ ଅର୍ଥଶାସ୍ତ୍ରବିଦ୍‌ମାନେ ଗଢ଼ନ୍ତି । ନ୍ୟାୟ ବୁଦ୍ଧିର ଶାସ୍ତ୍ର ହିଁ ପ୍ରକୃତ ଶାସ୍ତ୍ର । ପ୍ରତ୍ୟେକ ପରିସ୍ଥିତିରେ କିପରି ନ୍ୟାୟ କରାଯିବ, କିପରି ନୀତି ରକ୍ଷା କରାଯିବ—ଏ ଶାସ୍ତ୍ରକୁ ଯେଉଁ ରାଷ୍ଟ୍ର ଶିଖେ ସେ ସୁଖୀ ହୁଏ, ବାକି ସବୁ କଥା ବୃଥା ଚେଷ୍ଟା, 'ବିନାଶ କାଳେ ବିପରୀତ ବୁଦ୍ଧି' ଭଳି । ଲୋକଙ୍କୁ ଯେ କୌଣସି ମତେ ପଇସା ଉପାର୍ଜନ କରିବାକୁ ଶିଖେଇବା ଅର୍ଥ ତାଙ୍କୁ ବିପରୀତ ବୁଦ୍ଧି ଶିଖେଇବା ।

---

## ସତ୍ୟ କ'ଣ ?

### (୪)

ପୂର୍ବ ତିନି ଅଧ୍ୟାୟରେ ଆମେ ଦେଖି ସାରିଛୁ ଯେ, ଅର୍ଥଶାସ୍ତ୍ରମାନଙ୍କର ସାଧାରଣ ନିୟମ ସବୁ ଠିକ୍ ନୁହେଁ । ସେ ନିୟମ ଅନୁସାରେ ଆଚରଣ କଲେ ବ୍ୟକ୍ତି ସମାଜ ଉଭୟେ ଦୁଃଖ ଭୋଗନ୍ତି । ଗରିବ ବେଶୀ ଗରିବ ହୁଏ ଓ ପଇସାବାଲାଙ୍କ ପାଖରେ ବେଶୀ ପଇସା ଜମା ହୁଏ, ତଥାପି ଉଭୟଙ୍କ ଭିତରୁ କେହି ହେଲେ ସୁଖୀ ହୁଏ ନାହିଁ ।

ଅର୍ଥଶାସ୍ତ୍ରବିତ୍ ମଣିଷର ଅଟେରଣର ବିଗ୍ଭର ନ କର, ବେଶୀ ପଇସା ଜମା କରିବାଠାରୁ ହିଁ ଅଧିକ ଉନ୍ନତ କରିବା, ଏହି କଥା ବିଶ୍ୱାସ କରନ୍ତି ଓ ଧନ ହିଁ ଲୋକଙ୍କର ଏକମାତ୍ର ସୁଖର ଆଧାର ବୋଲି କହନ୍ତି । ସେଥିଯୋଗୁଁ ସେମାନେ ଶିଖାନ୍ତି ଯେ, କଳା କୌଶଳ ଆଦିର ବୃଦ୍ଧି ଦ୍ୱାରା ଯେତେ ବେଶୀ ଧନ ଜମା କରାଯାଇପାରିବ ସେତେ ଭଲ । ଏହି ଧରଣର ବିଗ୍ଭରର ପ୍ରଗ୍ଭର ଯୋଗୁଁ ଇଂଲଣ୍ଡ ଓ ଅନ୍ୟ ଦେଶମାନଙ୍କରେ କାରଖାନା ବଢ଼ି ଗଲାଣି । ବହୁତ ଲୋକ ସହରରେ ଜମା ହେଉଛନ୍ତି ଓ ଗ୍ରାମବାସ ଛାଡ଼ି ଦେଉଛନ୍ତି । ବାହାରର ସୁନ୍ଦର ଓ ସ୍ୱଚ୍ଛ ପବନକୁ ଛାଡ଼ି କାରଖାନାମାନଙ୍କର ଦୂଷିତ ବାୟୁରେ ଦିନରାତ ନିଶ୍ୱାସ ମାରିବା-ଠାରୁ ହିଁ ସୁଖ ମଣୁଛନ୍ତି । ଏହା ଫଳରେ ଲୋକେ ଦୁର୍ବଳ ହୋଇ ଯାଉଛନ୍ତି । ଲୋଭ ବଢ଼ି ଯାଉଛି ଓ ଅନୀତି ବ୍ୟାପିଯାଉଛି । ଆଉ ଆମେ ଅନୀତିକୁ ଦୂର କରିବା କଥା କହିଲା ବେଳକୁ ବୁଦ୍ଧିମାନ ବୋଲାଉଥିବା ଲୋକେ କହୁଛନ୍ତି ଯେ ଅନୀତି ଦୂର ହୋଇ ପାରିବ ନାହିଁ, ଅଜ୍ଞାନ ଲୋକଙ୍କୁ ଏକା ଥରକେ ଜ୍ଞାନ ମିଳିପାରିବ ନାହିଁ ସେଥିଯୋଗୁଁ ଯେମିତି ଗ୍ଭଲୁଛି ଗ୍ଭଲିବାକୁ ଦେବା ଗ୍ଭହି । ଏ ଯୁକ୍ତି ବାଢ଼ିଲାବେଳକୁ ସେମାନେ ଏ କଥା ଭୁଲି ଯା'ନ୍ତି ଯେ ଧନୀ ଲୋକେହିଁ ଗରିବଙ୍କର ନୀତି ହୀନତାର କାରଣ । ସେମାନଙ୍କର ଭୋଗବିଳାସର ସାମଗ୍ରୀ ଯୋଗାଇବାକୁ ଗରିବ ଲୋକେ ଦିନ ରାତି ମୂଲ ଲାଗୁଛନ୍ତି, କୌଣସି କଥା ଶିଖିବାକୁ, କୌଣସି ଭଲ କାମ କରିବାକୁ ତାଙ୍କୁ ମୁହୂର୍ତ୍ତେ ସମୟ ମିଳୁନାହିଁ । ଧନୀଙ୍କୁ ଦେଖି ସେ ବି ଧନୀ ହେବାକୁ ଗ୍ଭହୁଁଛନ୍ତି । ଧନୀ ନ ହୋଇ ପାରିଲା ବେଳକୁ କ୍ଷୁଣ୍ଣ ହେଉଛନ୍ତି, ଚିଡ଼ିଯାଉଛନ୍ତି । ତା' ପରେ ବିବେକ ହରେଇ, ଭଲ ବାଟରେ ଧନ ନ ମିଳିବାରୁ ଦେଖି ଚୋରି ଓ ଜୁଆଗ୍ଭେରି

ଦ୍ୱାରା ପଇସା ଉପାର୍ଜନ କରିବାର ବୃଥା ଉଦ୍ୟମ କରୁଛନ୍ତି। ଏହିରୂପେ ପଇସା ଓ ପରିଶ୍ରମ, ଉଭୟ ବରବାଦ ହେଉଛି, ବା ଠକାମି ଜୁଆଚୋରି ବଢ଼େଇବାରେ ତାହା ଲାଗୁଛି।

ବାସ୍ତବରେ, ଯେଉଁଥିରୁ କୌଣସି ଦରକାରି ଜିନିଷ ଉତ୍ପନ୍ନ ହେବ ତାହାହିଁ ପ୍ରକୃତ ଶ୍ରମ। ଯାହାଦ୍ୱାରା ମାନବ ଜାତିର ଭରଣ-ପୋଷଣ ହେବ ତାହାହିଁ ଦରକାରି ଜିନିଷ। ଯାହାଦ୍ୱାରା ମଣିଷକୁ ଯଥେଷ୍ଟ ଖାଦ୍ୟବସ୍ତ୍ର ମିଳିପାରିବ ବା ସେ ନୀତିମାର୍ଗରେ ଦୃଢ଼ ରହି ଆଜୀବନ ସତ୍କର୍ମ କରିପାରିବ ତାହାହିଁ ଭରଣପୋଷଣ। ଏ ଦୃଷ୍ଟିରୁ ବିଚାର କଲେ ବେଳକୁ ବଡ଼ ବଡ଼ ଆୟୋଜନମାନ ବୃଥା ଜଣାପଡ଼ିବ। ହୁଏତ କଲକାରଖାନା ଖୋଲି ଧନୀ ହେବାର ବାଟ ଧରିବାଟା ପାପକର୍ମ ବୋଲି ଜଣାପଡ଼ିବ। ପଇସା ଉପାର୍ଜନ କରିବାବାଲା ତ ବହୁତ ଅଛନ୍ତି କିନ୍ତୁ ତାର ଯଥାଯଥ ବ୍ୟବହାର କରିବାବାଲା କମ୍। ଯେଉଁ ଧନ ଅର୍ଜନ କରିବାଦ୍ୱାରା ଲୋକେ ବରବାଦ ହୁଅନ୍ତି ସେ ଧନ ବୃଥା। ଆଜି ଯେଉଁ କୋଟିପତିମାନେ ଅଛନ୍ତି ସେମାନେ ବଡ଼ ବଡ଼ ଅନୀତିମୟ ଯୁଦ୍ଧ ଯୋଗୁଁ କୋଟିପତି ହୋଇଛନ୍ତି। ଏ ଯୁଗର ଅଧିକାଂଶ ଯୁଦ୍ଧର ମୂଳ କାରଣ ଧନ ଲୋଭ ବୋଲି ଜଣାପଡ଼ୁଛି।

ଲୋକେ ଏ କଥା କହିବାର ଦେଖାଯାନ୍ତି ଯେ ଅନ୍ୟକୁ ସୁଧାରିବା, ଜ୍ଞାନ ଦେବା ଅସମ୍ଭବ; ସେଥିଯୋଗୁଁ ଯେମିତି ଭଲ ଜଣାଯିବ ସେମିତି ଚଳିବା ଓ ଧନ ସଂଗ୍ରହ କରିବା ଉଚିତ। ଏଭଳି କହିବା ଲୋକେ ନିଜେ ନୀତି ପାଳନ କରନ୍ତି ନାହିଁ; କାରଣ ଯେ ନୀତି ପାଳନ କରେ ଓ ଲୋଭରେ ପଡ଼େ ନାହିଁ, ସେ ତ ଆଗ ନିଜ ମନକୁ ସ୍ଥିର ରଖେ। ନିଜେ ସନ୍ମାର୍ଗରୁ

ବିଚଳିତ ହୁଏ ନାହିଁ ଓ ନିଜ କାମ ଦ୍ୱାରାହିଁ ଅନ୍ୟମାନଙ୍କ ଉପରେ ପ୍ରଭାବ ପକେଇଥାଏ । ଯାହାଙ୍କୁ ନେଇ ସମାଜ ଗଢ଼ାହୋଇଛି ସେମାନେ ନିଜେ ନୈତିକ ନିୟମ ପାଳନ ନ କରିବାଯାଏ ସମାଜ ନୀତିମାନ ହେବ କେମିତି ? ଆମେ ନିଜେ ତ ଯଥେଚ୍ଛା ଆଚରଣ କରିବୁ ଅଥଚ ପଢ଼ଶା ଘରର ଅନୀତି ଯୋଗୁଁ ତାର ଦୋଷ ଧରିବୁ ତ ତହିଁର ଭଲ ଫଳ କେମିତି ହେବ ?

ଏମିତି ବିଚାର କଲେ ଆମେ ଦେଖି ପାରିବା ଯେ, ଧନ କେବଳ ଗୋଟାଏ ସାଧନ ଓ ତା'ଦ୍ୱାରା ସୁଖ ଓ ଦୁଃଖ ଉଭୟ ମିଳିପାରେ । ତାହା ଭଲ ଲୋକ ହାତରେ ପଡ଼ିଲେ ତା'ଦ୍ୱାରା କୃଷିକାମ ହୁଏ ଓ ଖାଦ୍ୟ ଉତ୍ପନ୍ନ ହୁଏ, କୃଷୀମାନେ ନିର୍ଦ୍ଦୋଷ ପରିଶ୍ରମ କରି ସନ୍ତୁଷ୍ଟ ହୁଅନ୍ତି ଓ ଦେଶ ସୁଖୀ ହୁଏ । ଖରାପ ଲୋକ ହାତରେ ଧନ ପଡ଼ିଲେ ତା'ଦ୍ୱାରା ଗୋଳା ବାରୁଦ ତିଆରି ହୁଏ ଓ ଲୋକଙ୍କର ସର୍ବନାଶ ହୁଏ । ଗୋଳା ବାରୁଦ ତିଆରି କରିବା ଦେଶ ଓ ଯେଉଁ ଦେଶ ବିରୁଦ୍ଧରେ ତାହା ବ୍ୟବହୃତ ହୁଏ, ଉଭୟ ଲୋକସାନ ସହନ୍ତି ଓ ଦୁଃଖ ଭୋଗନ୍ତି ।

ଏହିରୂପେ ଆମେ ଦେଖି ପାରିବା ଯେ, ଖାଣ୍ଟି ମଣିଷହିଁ ପ୍ରକୃତ ଧନ । ଯେଉଁ ରାଷ୍ଟ୍ରର ନୀତି ଅଛି ସେ ଧନ ରକ୍ଷକ । ଏ ଯୁଗ ଭୋଗ ବିଳାସର ନୁହେଁ । ପ୍ରତ୍ୟେକ ଲୋକ ଯେତେ ପାରିବ ମେହେନତ କରିବା ଉଚିତ । ପୂର୍ବ ଉଦାହରଣମାନଙ୍କରେ ଆମେ ଦେଖିଛୁ ଯେ ଯେଉଁଠି ଜଣେ ଲୋକ ଅଳସୁଆ ହୋଇ ବସେ, ସେଠି ଅନ୍ୟ ଜଣଙ୍କୁ ଦୁ'ଗୁଣା ମେହେନତ କରିବାକୁ ପଡ଼େ । ଇଂଲଣ୍ଡରେ ଯେଉଁ ଅକର୍ମା ସମସ୍ୟା ବ୍ୟାପିଛି ତାହାର ଏହାହିଁ କାରଣ । କେତେକ ଲୋକ ଅଛନ୍ତି, ଯାହାଙ୍କ ହାତରେ

ଧନ ପଡ଼ିଗଲେ ସେ ଆଉ କୌଣସି ଦରକାରୀ କାମ କରୁନାହାନ୍ତି; ତେଣୁ ସେମାନଙ୍କ ପାଇଁ ଅନ୍ୟମାନଙ୍କୁ ବେଶୀ ପରିଶ୍ରମ କରିବାକୁ ପଡ଼ୁଛି । ଏ ପରିଶ୍ରମ ଦରକାରୀ ନ ହୋଇଥିବାରୁ କାମ କଲାବାଲାଙ୍କୁ ସେଥିରୁ ଲାଭ ହେଉନାହିଁ । ଏହା ହେବା ଦ୍ୱାରା ରାଷ୍ଟ୍ରର ପୁଞ୍ଜି କମିଯାଉଛି । ସେଥିଯୋଗୁଁ ବାହାରୁ ଦେଖିଲା ବେଳକୁ ଲୋକଙ୍କୁ କାମ ମିଳିଲା ପରି ଦେଖାଗଲେ ବି ଭିତରୁ ଅନୁସନ୍ଧାନ କଲାବେଳକୁ ବହୁତ ଲୋକ ଅକର୍ମା ହୋଇ ବସୁଥିବାର ଜଣା ପଡ଼ିବ । ତା'ପରେ ଈର୍ଷା ବି ଜନ୍ମୁଛି, ଅସନ୍ତୋଷର ଚେର ମାଡ଼ୁଛି ଓ ଶେଷକୁ ଧନୀ—ଦରିଦ୍ର, ମାଲିକ, ମୂଲିଆ ଉଭୟେ ନିଜର ସୀମା ଟପିଯାଉଛନ୍ତି । ଯେମିତି ବିଲେଇ ଓ ମୂଷାଙ୍କ ଭିତରେ ସବୁଦିନେ ଅପଡ଼ ସେମିତି ଧନୀ ଦରିଦ୍ର, ମାଲିକ ମୂଲିଆଙ୍କ ଭିତରେ ଶତ୍ରୁତା ହେଉ ଯାଉଛି ଓ ମଣିଷ ମଣିଷ ନ ରହି ପଶୁ ହୋଇ ଯାଉଛି ।

---

## ସାରାଂଶ

(୫)

ମହାନ୍ ରସ୍କିନ୍‌ଙ୍କର ଲେଖାର ମର୍ମ ଆମେ ଦେଲୁଁ । ଏ ଲେଖା ପାଠକମାନଙ୍କୁ ନୀରସ ଜଣାଗଲେ ବି ତାକୁ ଯେ ଥରେ ପଢ଼ିଥିବ ତାଙ୍କୁ ଆଉଥରେ ପଢ଼ିଯିବାକୁ ଆମେ ନିବେଦନ କରୁଛୁ । 'ଇଣ୍ଡିଆନ ଓପିନିୟନ୍'*ର ସବୁ ପାଠକମାନେ ଏହାକୁ ପଢ଼ି

* ଏହି ନାମର ଗୁଜରାଟୀ—ଇଂରେଜୀ ସାପ୍ତାହିକ ପତ୍ରିକା ଗାନ୍ଧୀଜୀ ଦକ୍ଷିଣ ଆଫ୍ରିକାରେ ବାହାର କରୁଥିଲେ ।

ଏହି ଅନୁସାରେ ଆଚରଣ କରିବେ ବୋଲି ଆଶା କରିବାଟା ବୋଧହୁଏ ବହୁତ ବଡ଼ ଅଭିଳାଷ ହୋଇଯିବ । କିନ୍ତୁ ଯଦି ଅଳ୍ପ କେତେକ ପାଠକ ବି ଏହାକୁ ଅଧ୍ୟୟନ କରି ଏହାର ସାର ଗ୍ରହଣ କରିବେ ତେବେ ଆମେ ଆମ ପରିଶ୍ରମ ସଫଳ ହେଲା ବୋଲି ଜାଣିବୁ । ଯଦି ନ ହୋଇ ପାରିଲେ ବି ରସ୍କିନ୍‌ଙ୍କ ଶେଷ ପରିଚ୍ଛେଦ ଅନୁସାରେ ଆମେ ଆମର ଯେଉଁ କର୍ତ୍ତବ୍ୟ କରିଦେଲୁ, ତାର ଭିତରେ ତାର ଫଳର ସମାବେଶ ହୋଇଯାଇଛି, ସେଥିଯୋଗୁଁ ଆମେ ସର୍ବଦା ସନ୍ତୋଷ ଅନୁଭବ କରିବା ଉଚିତ । ରସ୍କିନ୍ ଯେଉଁ କଥା ତାଙ୍କ ଭାଇ ଇଂରେଜମାନଙ୍କ ପାଇଁ ଲେଖିଛନ୍ତି ତାହା ଇଂରେଜଙ୍କ ପ୍ରତି ଭାବରେ ଖାଟିବ ତ ଭାରତ-ବାସୀଙ୍କ ପ୍ରତି ହଜାରେ ଭାଗ ଖାଟିବ । ଭାରତରେ ନୂଆ ଭାବଧାରା ବ୍ୟାପୁଛି । ଆଜିକାଲିକାର ପାଶ୍ଚାତ୍ୟ ଶିକ୍ଷା ପ୍ରାପ୍ତ ଯୁବକମାନଙ୍କ ଭିତରେ ଉତ୍ସାହ ଆସିଛି । ଭଲ କଥା, କିନ୍ତୁ ସେ ଉତ୍ସାହର ଭଲ ବ୍ୟବହାର ହେଲେ ଭଲ ଫଳ ଓ ମନ୍ଦ ବ୍ୟବହାରର ମନ୍ଦ ଫଳ ହେବ । ଗୋଟାଏ ଆଡ଼ୁ ଏ ଧ୍ୱନି ଉଠୁଛି ଯେ, ସ୍ୱରାଜ୍ୟ ହାସଲ କରିବା ଦରକାର ଓ ଅନ୍ୟ ଆଡୁ ଧ୍ୱନି ଉଠୁଛି ଯେ ବିଲାତ ଭଳି କଳକାରଖାନା ଖୋଲି ଶୀଘ୍ର ଶୀଘ୍ର ଧନ ସଂଗ୍ରହ କରିବା ଦରକାର ।

ସ୍ୱରାଜ କ'ଣ, ଯାହାର ଅର୍ଥ ଆମେ କୁହାଉ ବୁଝୁ । ନେଟାଲ୍‌ରେ ସ୍ୱରାଜ୍ୟ ଅଛି, କିନ୍ତୁ ଆମେ କହୁଛୁ ଯେ, ନେଟାଲ୍‌ରେ ଯାହା ହେଉଛି ଆମେ ବି ସେୟା କରିବାକୁ ଚାହୁଁଥିବା ତ ସେଭଳି ସ୍ୱରାଜ୍ୟ ନରକ-ରାଜ୍ୟ । ନେଟାଲ୍‌ର ଲୋକେ ନିଗ୍ରୋମାନଙ୍କୁ ଦଳନ କରୁଛନ୍ତି, ଭାରତୀୟଙ୍କର ପ୍ରାଣ ହରଣ କରୁଛନ୍ତି । ସ୍ୱାର୍ଥରେ ଅନ୍ଧ ହୋଇ ସ୍ୱାର୍ଥରାଜ୍ୟ ଭୋଗ କରୁଛନ୍ତି । ନିଗ୍ରୋ ଓ ଭାରତୀୟ-

ମାନେ ନେପାଳରୁ ଚାଲିଗଲେ ସେମାନେ ନିଜ ଭିତରେ ହଣାକଟା ହୋଇ ମରିବେ ।

ତେବେ କଣ ଆମେ ଟ୍ରାନ୍‌ସଭାଲ ଭଳି ସ୍ୱରାଜ୍ୟ ହାସଲ କରିବା ? ସେମାନଙ୍କ ନେତାମାନଙ୍କ ଭିତରୁ ଜଣେ ହେଉଛନ୍ତି ଜେନେରାଲ ସ୍ମଟ୍‌ସ୍ । ସେ ଅପଣା ଲିଖିତ ବା ମୌଖିକ ଭବାବ ପାଳୁନାହାନ୍ତି । ଗୋଟିଏ କଥା କହୁଛନ୍ତି ଆଉ କଥାଏ କରୁଛନ୍ତି । ଇଂରେଜମାନେ ତାଙ୍କ ଉପରେ ଭଡ଼ ଗଲେଣି । ଖର୍ଚ୍ଚ କାଟିବାହାନାରେ ସେ ଇଂରେଜ ସୈନିକଙ୍କର ଭିଞ୍ଚ କାଟି ତାଙ୍କ ଯାଗାରେ ଓଲନ୍ଦାଜଙ୍କୁ ରଖିଛନ୍ତି । ଏଥି ଦ୍ୱାରା ଶେଷକୁ ଓଲନ୍ଦାଜ-ମାନେ ବି ସୁଖୀ ହେବେ ବୋଲି ଆମର ବିଶ୍ୱାସ ନୁହେଁ । ଯେଉଁମାନେ ସ୍ୱାର୍ଥପର ମନୋଭାବ ପୋଷଣ କରନ୍ତି ସେମାନେ ବିଦେଶୀ ଜନସାଧାରଣଙ୍କୁ ଲୁଟିସାରିବା ପରେ ଆପଣା ଲୋକଙ୍କୁ ଲୁଟିବାକୁ ଅଙ୍କ୍ଲେଶରେ ପ୍ରସ୍ତୁତ ହୋଇଯିବେ ।

ସଂସାରର ଚାରିଆଡ଼େ ଦୃଷ୍ଟି ପକେଇ ଗଲେ ଆମେ ଦେଖିପାରିବା ଯେ, ଯେଉଁ ରାଜ୍ୟକୁ ସ୍ୱରାଜ୍ୟ କୁହାଯାଉଛି, ତାହା ଲୋକଙ୍କର ଉନ୍ନତ ଓ ସୁଖପାଇଁ ଯଥେଷ୍ଟ ନୁହେଁ । ଗୋଟାଏ ସରଳ ଉଦାହରଣ ଦ୍ୱାରା ଆମେ ଏକଥା ସହଜରେ ଦେଖିପାରିବା । ଡକେଇତଙ୍କ ଦଳରେ ସ୍ୱରାଜ ହୋଇଗଲେ କଣ ପରିଣାମ ହେବ ତାହା ସମସ୍ତେ ବୁଝିପାରିବେ । ଯେ ନିଜେ ଡକେଇତ ନ ହୋଇଥିବ ସେହିଭଳି ଜଣେ ଲୋକର ତାଙ୍କ ଉପରେ ଅଧିକାର ରହିଲେ ଯାଇଁ ସେମାନେ ଶେଷକୁ ସୁଖୀ ହୋଇ ପାରିବେ । ଆମେରିକା, ଫ୍ରାନ୍‌ସ, ଇଂଲଣ୍ଡ, ସବୁ ବଡ଼ ବଡ଼ ରାଜ୍ୟ, କିନ୍ତୁ ସେମାନେ ପ୍ରକୃତରେ ସୁଖୀ ବୋଲି ଧରିନେବାର କୌଣସି ଭିତ୍ତି ନାହିଁ ।

ସ୍ୱରାଜ୍ୟର ବାସ୍ତବିକ ଅର୍ଥ ହେଉଛି ନିଜ ଉପରେ ଅଖ୍ତିଆର ରଖିପାରିବା । ଏ କଥା ସେହି ଲୋକ କରିପାରିବ ଯେ ସ୍ୱୟଂ ନୀତି ପାଳନ କରେ, ଅନ୍ୟକୁ ଠକାଏ ନାହିଁ, ମାତା-ପିତା, ସ୍ତ୍ରୀ ବାଳକ, ଗୃହକର—ଚାକର, ସାଇପଡ଼ିଶା ସମସ୍ତଙ୍କ ପ୍ରତି ତାର କର୍ତ୍ତବ୍ୟ ପାଳନ କରେ । ଏଭଳି ଲୋକ ଯେଉଁ ଦେଶରେ ଥିଲେ ବି ସ୍ୱରାଜ ଭୋଗୁଛି । ଯେଉଁ ଦେଶରେ ଏଭଳି ଲୋକଙ୍କ ସଂଖ୍ୟା ବେଶୀ, ତାକୁ ସ୍ୱରାଜ ମିଳିଗଲାଣି ବୋଲି ବୁଝିବାକୁ ହେବ ।

ଗୋଟାଏ ଦେଶ ଆଉ ଗୋଟାଏ ଦେଶ ଉପରେ ଶାସନ କରିବାଟାକୁ ସାଧାରଣତଃ ଖରାପ କୁହାଯିବ । ଇଂରେଜମାନେ ଆମ ଉପରେ ରାଜତ୍ୱ କରିବା ଏକ ବିପରୀତ କଥା, କିନ୍ତୁ ଯଦି ଇଂରେଜମାନେ ଭାରତରୁ ଚାଲିଯିବେ ତେବେ ଭାରତବାସୀ ଗୋଟାଏ ବଡ଼ କଥା କଲେ ବୋଲି କହିବାକୁ ହେବ । ସେମାନେ ଆମ ଉପରେ ରାଜତ୍ୱ କରିବାର କାରଣ ଆମେ ନିଜେ । ଆମର ଭେଦ, ଆମର ଅନୀତି ଓ ଆମର ଅଜ୍ଞାନ ଏହାର କାରଣ । ଏ ତିନିକଥା ଲୋପ ପାଇଗଲେ ଆମକୁ ଗୋଟିଏ ଆଙ୍ଗୁଠି ସୁଦ୍ଧା ହଲାଇବାକୁ ପଡ଼ିବ ନାହିଁ । ଇଂରେଜମାନେ ଚୁପଚାପ ଭାରତରୁ ଚାଲିଯିବେ । ଏତିକି ନୁହେଁ, ଆମେ ବି ପ୍ରକୃତ ସ୍ୱରାଜ୍ୟ ଭୋଗ କରିପାରିବା ।

ବୋମା କାଣ୍ଡ ଦ୍ୱାରା ବହୁତ ଲୋକେ ଖୁସି ହେବାର ଦେଖା ଯାଉଛି । ଏହା କେବଳ ଅଜ୍ଞତା ଓ ଅବୁଝା ପଣିଆର ଲକ୍ଷଣ । ଯଦି ସବୁ ଇଂରେଜଙ୍କୁ ମାରି ଦିଆ ଯାଇପାରିବ, ତେବେ ତାଙ୍କୁ ମାରିବାବାଲାହିଁ ଭାରତର ମାଲିକ ହେବେ । ଅର୍ଥାତ ଭାରତ ଗୋଲାମ ହୋଇ ହିଁ ରହିବ । ଇଂରେଜଙ୍କୁ ବିନାଶକରିବା

ବାଲ୍ମଙ୍କ ବୋମା ଇଂରେଜ ଚାଲିଯିବା ପରେ ପରେ ଭାରତୀୟ ମାନଙ୍କ ମୁଣ୍ଡରେ ହିଁ ବର୍ଷିବ । ଫ୍ରାନ୍‌ସର ପ୍ରଜାତନ୍ତ୍ରର ସଭାପତିଙ୍କୁ ମାରିବା ଲୋକ ଜଣେ ଫରାସୀ ହିଁ ଥିଲା । ଆମେରିକାର ରାଷ୍ଟ୍ରପତି ମ୍ୟାକ୍‌କିନ୍‌ଲେଙ୍କୁ ମାରିବା ଲୋକ ଜଣେ ଆମେରିକାନ ହିଁ ଥିଲା । ଏଥିଯୋଗୁ ଆମେ ତର ତର ହୋଇ ନ ବୁଝି ନ ବିଚାରି ପାଶ୍ଚାତ୍ୟ ଜାତି ମାନଙ୍କର ଅନ୍ଧ ଅନୁକରଣ କରିବା କଦାପି ଉଚିତ ନୁହେଁ ।

ଯେମିତି ପାପକର୍ମ ଦ୍ୱାରା—ଇଂରେଜଙ୍କୁ ମାରି, ପ୍ରକୃତ ସ୍ୱରାଜ୍ୟ ହାସଲ କରି ହେବ ନାହିଁ, ସେମିତି ଭାରତରେ କାରଖାନା ଖୋଲିଲେ ବି ସ୍ୱରାଜ ମିଳିବ ନାହିଁ । ରସ୍‌କିନ୍ ଏକଥା ପୂରାପୂରି ପ୍ରମାଣ କରି ଦେଖେଇଛନ୍ତି ଯେ, ସୁନାରୂପା ଜମା ହୋଇଗଲେ କିଛି ରାଜ୍ୟ ମିଳିଯାଏ ନାହିଁ । ଏକଥା ମନେରଖିବାକୁ ହେବ ଯେ ପାଶ୍ଚାତ୍ୟ ଦେଶମାନଙ୍କରେ ସଂସ୍କାର ହେବାର ମୋଟେ ଶହେ ବର୍ଷ ହୋଇଛି । ବରଂ ପ୍ରକୃତରେ ଦେଖିବାକୁ ଗଲେ ପଚାଶ ବର୍ଷ ହିଁ ହେବ । ଏତିକ ସମୟ ଭିତରେ ପାଶ୍ଚାତ୍ୟ ଜନସାଧାରଣ ବର୍ଣ୍ଣ-ଶଙ୍କର ହେଲା ଭଳିଆ ଜଣା ପଡୁଛନ୍ତି । ଆମର ଏୟା ପ୍ରାର୍ଥନା ଯେ ୟୁରୋପଭଳି ଅବସ୍ଥା ଭାରତର କଦାପି ନ ହେଉ । ୟୁରୋପର ରାଷ୍ଟ୍ରମାନେ ପରସ୍ପରକୁ ଛକି ବସିଛନ୍ତି । କେବଳ ଆପଣା ଆପଣା ଆୟୋଜନ କରିବାରେ ଲାଗିଥିବାରୁ ସମସ୍ତେ ଶାନ୍ତ ଅଛନ୍ତି । କେତେବେଳେ ପ୍ରବଳ ନିଆଁ ଲାଗିଯିବ ତ ୟୁରୋପରେ ନରକର ଦୃଶ୍ୟ ଦେଖାଯିବ । ୟୁରୋପର ପ୍ରତ୍ୟେକ ରାଜ୍ୟ କଳାଲୋକଙ୍କୁ ଆପଣା ଭକ୍ଷ୍ୟ ବୋଲି ଧରି ନେଇଛନ୍ତି । ଯୋଉଠି କେବଳ ଧନ ଲୋଭ ଥିବ ସେଠି ଅନ୍ୟ କୌଣସି କଥା ରହିବ କେମିତି ? ତାଙ୍କ ନଜରରେ ଟୋକାଏ ଦେଶ ପଡ଼ିଲାମାତ୍ରେ ମାଂସ ଉପରକୁ କାଉ ସାଗୁଣା ଝାମ୍ପିଲାଭଳି ସେମାନେ ତା ଉପରକୁ ଝାମ୍ପ

ମାରନ୍ତି । ଏସବୁ ଯେ ତାଙ୍କର କାରଖାନା ଯୋଗୁଁ ହେଉଛି, ଏ କଥା ଆମର ବିଶ୍ୱାସ କରିବାର କାରଣ ଅଛି ।

ଶେଷକୁ, ଭାରତକୁ ସ୍ୱରାଜ୍ୟ ମିଳୁ, ସମସ୍ତ ଭାରତବାସୀ ଏହି ଡାକ ଛାଡ଼ୁଛନ୍ତି ଓ ତାହା ଉଚିତ କଥା ମଧ୍ୟ । କିନ୍ତୁ ଏ ସ୍ୱରାଜ୍ୟ ଆମକୁ ନୀତିମାର୍ଗରେ ହାସଲ କରିବାକୁ ହେବ । ତାହା କେବଳ ନାଁକୁ ମାତ୍ର ନୁହେଁ; ବାସ୍ତବିକ ସ୍ୱରାଜ୍ୟ ହେବା ଉଚିତ । ଭାରତବାସୀ ସୁନାଭଳି ଥିଲେ, ସେଥିଯୋଗୁଁ ଭାରତଭୂମି ଦିନେ ସ୍ୱର୍ଣ୍ଣଭୂମି ବୋଲାଉଥିଲା । ସେହି ଭୂମି ତ ଅଛି, କିନ୍ତୁ ଲୋକେ ବଦଳି ଗଲେଣି, ସେଥିଯୋଗୁ ଏ ଭୂଇଁ ମରୁଭୂମି ଭଳି ହୋଇଗଲାଣି । ଏହାକୁ ପୁଣି ସୁନା କରିବାକୁ ହେଲେ ଆମକୁ ସଦ୍‌ଗୁଣ ଦ୍ୱାରା ସୁନାଭଳି ହେବାକୁ ହେବ । ଆମକୁ ଯେଉଁ ପରଶମଣି ସୁନା କରିଦେବ ତାହା ଦୁଇଟି ଅକ୍ଷରରେ ଅଛି— ତାହା 'ସତ୍ୟ' । ସେଥିଯୋଗୁଁ ଯଦି ପ୍ରତ୍ୟେକ ଭାରତବାସୀ 'ସତ୍ୟ'ର ଆଗ୍ରହହିଁ କରିବେ, ତେବେ ଭାରତକୁ ଘରେ ବସି ସ୍ୱରାଜ୍ୟ ମିଳିଯିବ ॥

ସ. ମା. ପ୍ର.

ମୁଦ୍ରାକର—ହାଡ଼ିବନ୍ଧୁ ଦାସ, କଂଗ୍ରେସ ପ୍ରେସ, କଟକ-୨

# ସଂବିଧାନ ସମୀକ୍ଷା ପ୍ରସ୍ତାବ ଚରମ

# ଗଣତନ୍ତ୍ର ବିରୋଧୀ ପଦକ୍ଷେପ

ସଂବିଧାନ ସମୀକ୍ଷା କମିଶନ୍ ସର୍ବସାଧାରଣ ଆଲୋଚନା ନିମନ୍ତେ କେତେକ ପ୍ରସ୍ତାବମାନ ପ୍ରକାଶ କରିଛି । ଏହି ପ୍ରସ୍ତାବଗୁଡ଼ିକ ମଧ୍ୟରେ ରହିଛି ଦେଶର ନିର୍ବାଚନ ଓ ରାଜନୈତିକ ବ୍ୟବସ୍ଥାର ସଂସ୍କାର ଓ ବିଚାର ବ୍ୟବସ୍ଥାର ସଂସ୍କାର ସଂକ୍ରାନ୍ତୀୟ କେତେକ ପ୍ରସ୍ତାବ । ସି.ପି.ଆଇ(ଏମ୍) ସମେତ ଦେଶର ବାମପନ୍ଥୀ ଓ ଗଣତାନ୍ତ୍ରିକ ଶକ୍ତିମାନେ ପୂର୍ବରୁ ସତର୍କ କରି ଆସୁଛନ୍ତି ଯେ ଏହି କମିଶନ୍ ଗଠନ ପଛରେ ଏକ ଗଭୀର ଚକ୍ରାନ୍ତ ରହିଛି । ଆର୍.ଏସ୍.ଏସ୍ - ବି.ଜେ.ପି ମେଣ୍ଟ ତାଲିବାନଙ୍କ ଢାଞ୍ଚାରେ ଦେଶ ଗଠନ ପାଇଁ ଦୀର୍ଘ ମିଆଦି ଲକ୍ଷ୍ୟ ଚରିତାର୍ଥ କରିବା ଉଦ୍ଦେଶ୍ୟରେ ଏହି କମିଶନ୍ ଗଠନ କରାଯାଇଛି । କମିଶନ୍ ଆଲୋଚନା ପାଇଁ ଏଯାବତ୍ ଯେଉଁସବୁ ପ୍ରସ୍ତାବମାନ ପ୍ରକାଶ କରୁଛନ୍ତି ସେଥିରେ ଏହି ସତର୍କତାର ଯଥାର୍ଥତା ପ୍ରମାଣିତ ।

ଆସନ୍ତୁ, ଦେଖିବା ଆମେ କ'ଣ କହିଥିଲୁ । ସି.ପି.ଆଇ(ଏମ୍)ର ପ୍ରଥମ ଓ ପ୍ରଧାନ ଆପତ୍ତି ଥିଲା ଯେ, କେନ୍ଦ୍ରୀୟ ସରକାର ଦ୍ୱାରା ନିଯୁକ୍ତ ଏକପ୍ରକାର ଏକ କମିଶନ୍‌ର ସୁସଂହତଭାବେ ସଂବିଧାନ ପର୍ଯ୍ୟାଲୋଚନା କରିବାର କୌଣସି ଅଧିକାର ଓ ବୈଧତା ନାହିଁ । ଏକମାତ୍ର ପାର୍ଲାମେଣ୍ଟ ହିଁ ଏ ବିଷୟରେ ସିଦ୍ଧାନ୍ତ ଗ୍ରହଣ କରିପାରେ । ଅଥଚ ଏ ବ୍ୟାପାରରେ ପାର୍ଲାମେଣ୍ଟକୁ ସଂପୂର୍ଣ୍ଣଭାବେ ଏଡ଼ାଇ ଦିଆଯାଇଛି ।

ଦ୍ୱିତୀୟତଃ, ରାଷ୍ଟ୍ରପତି ପ୍ରଧାନ ଶାସନ ବ୍ୟବସ୍ଥା ଚାଲୁ କରିବା ପାଇଁ ହିଁ ବି.ଜେ.ପି ସଂବିଧାନ ପର୍ଯ୍ୟାଲୋଚନା ସପକ୍ଷରେ ଓକିଲାତି କରୁଛି । ସେଥି ସହିତ ସମ୍ବିଧାନର ୩୦ ନମ୍ବର ଧାରା ପରି ଯେଉଁ ସବୁ ଧାରାରେ ସଂଖ୍ୟାଲଘୁମାନଙ୍କର କିଛି ନିର୍ଦ୍ଦିଷ୍ଟ ଅଧିକାର ସୁନିଶ୍ଚିତ କରାଯାଇଛି, ବି.ଜେ.ପି ସେଗୁଡ଼ିକ ପରିବର୍ତ୍ତନ କରିବାକୁ ଚାହେଁ ।

ତୃତୀୟତଃ, ସଂବିଧାନ ପ୍ରଣୟନର ୫୦ ବର୍ଷ ପରେ ତା'ର ପର୍ଯ୍ୟାଲୋଚନାର ଅସଲ ଉଦ୍ଦେଶ୍ୟ ହେଲା, ସଂବିଧାନର ଧର୍ମନିରପେକ୍ଷତା ଧ୍ୱଂସ କରି ହିନ୍ଦୁତ୍ୱର ପ୍ରୟୋଜନ ଅନୁସାରେ ତା'ର ରୂପାନ୍ତର ଘଟାଇବା । କାରଣ, ହିନ୍ଦୁ ରାଷ୍ଟ୍ରର ଲକ୍ଷ୍ୟପୂରଣ ପଥରେ ଆର୍.ଏସ୍.ଏସ୍ ସାମନାରେ ଏହି ସମ୍ବିଧାନ ଏକ ବିରାଟ ପ୍ରତିବନ୍ଧକ । ତେଣୁ ଆର୍.ଏସ୍.ଏସ୍ କ୍ରମାଗତ ଭାବେ ଏହି ସଂବିଧାନକୁ ଆକ୍ରମଣ କରିଚାଲିଛି ।

ଆଲୋଚ଼ନା ପାଇଁ ସଂବିଧାନ ସମୀକ୍ଷା କମିଶନ ଯେଉଁସବୁ ପ୍ରସ୍ତାବ ପ୍ରକାଶ କରିଛି ସେଥିରୁ ଆମର ଏହି ଅବସ୍ଥାନର ସଠିକତା ପ୍ରମାଣିତ । ଏହି କମିଶନକୁ କେହି ମାନିବା ସମ୍ଭବ ନୁହେଁ । ଏହି କମିଶନର କୌଣସି କାର୍ଯ୍ୟରେ ଆମ୍ଭେମାନେ ସଂପୃକ୍ତ ହେବା ମଧ ଉଚିତ୍ ନୁହେଁ । କମିଶନ୍‌ର ପ୍ରସ୍ତାବରେ ବି.ଜେ.ପି ର ଗୋପନ ଉଦ୍ଦେଶ୍ୟଗୁଡ଼ିକ ଧରା ପଡିଯାଇଛି । ଏହି ପ୍ରସ୍ତାବରେ ସଂସଦୀୟ ଗଣତନ୍ତ୍ରକୁ ଖର୍ବ କରିବାକୁ ଉଦ୍ୟମ ସ୍ପଷ୍ଟ । କେବଳ ସେତିକି ନୁହେଁ, ଏହି ପ୍ରସ୍ତାବରେ ଗଣତନ୍ତ୍ରକୁ ନିୟନ୍ତ୍ରିତ କରିବା ଲାଗି ବିଭିନ୍ନ ପଦକ୍ଷେପ ସପକ୍ଷରେ ନିର୍ଲଜ୍ଜ ଓକିଲାତି କରାଯାଇଛି, ଯଦ୍ଵାରା ଶାସକ ଶ୍ରେଣୀଗୁଡ଼ିକର ଚାହିଦା ପୂରଣ ହୋଇ ପାରିବ । ସେଥି ସଂଗେ ସଂଗେ ବିକୃତ କରାଯାଇଛି ଧର୍ମନିରପେକ୍ଷତାର ନୀତିକୁ । ସବୁଠାରୁ ନିନ୍ଦନୀୟ ବିଷୟ, ଏହି ପ୍ରସ୍ତାବରେ ହିନ୍ଦୁ ସାମ୍ପ୍ରଦାୟିକତାର ଭୂମିକା ଉପରେ ପରଦା ଢାଙ୍କିବାର ଉଦ୍ୟମ ହୋଇଛି ।

## ଗଣତନ୍ତ୍ର ଖର୍ବ କରିବାର ଅପପ୍ରୟାସ

ରାଜନୈତିକ ଦଳଗୁଡ଼ିକର କାର୍ଯ୍ୟକଳାପର ପର୍ଯ୍ୟାଲୋଚ଼ନା ଓ ନିର୍ବାଚ଼ନ ସଂସ୍କାର ସଂକ୍ରାନ୍ତୀୟ ଯେଉଁସବୁ ପ୍ରସ୍ତାବ କମିଶନ୍ ପ୍ରକାଶ କରିଛି ସେଥିରେ ପୂର୍ବତନ ରାଷ୍ଟ୍ରପତି ଭେଙ୍କଟରମଣ, ଲୋକସଭାର ପୂର୍ବତନ ବାଚସ୍ପତି ଶିବରାଜ ପାଟିଲ୍ ଏବଂ ଅନ୍ୟାନ୍ୟ ଦକ୍ଷିଣପନ୍ଥୀ ସଂବିଧାନ ବିଶେଷଜ୍ଞମାନଙ୍କର ମତାମତ ରହିଛି । ବସ୍ତୁତଃ, ସବୁଠାରୁ କ୍ଷତିକର ମତାମତ ଦେଇଛନ୍ତି ସେଇମାନେ । ସଂସଦୀୟ ଗଣତନ୍ତ୍ରକୁ ସଂକୁଚିତ କରି ଭବିଷ୍ୟତରେ ରାଷ୍ଟ୍ରପତି-ପ୍ରଧାନ ଶାସନ ବ୍ୟବସ୍ଥାର ପଥ ପ୍ରଶସ୍ତ କରିବା ହିଁ ଏହି ପ୍ରସ୍ତାବର ମୂଳ ଲକ୍ଷ୍ୟ । ରାଜନୈତିକ ଦଳଗୁଡ଼ିକ ଉପରେ ଭିତ୍ତି କରି ଯେଉଁ ବ୍ୟବସ୍ଥା ଆମ ଦେଶରେ ଗଢ଼ି ଉଠିଛି, ତା'ର ମୌଳିକ ପରିବର୍ତ୍ତନ ଘଟାଇବା ପାଇଁ ଅସ୍ଥିତିଶୀଳତାର ବିଷୟଟିକୁ ବାରମ୍ବାର ଟଣାଯାଇଛି । ପ୍ରସ୍ତାବରେ କୁହାଯାଇଛି, ଲୋକସଭାର ସଦସ୍ୟମାନେ ଲୋକସଭାର ନେତା ନିର୍ବାଚ଼ନ କରିବେ, ଯେପରି ସେମାନେ ବାଚସ୍ପତି ନିର୍ବାଚ଼ିତ କରନ୍ତି । ଏହାର ଅର୍ଥ, କୌଣସି ଦଳର, ଯଦି ସରକାର ଗଠନ ଲାଗି ଆବଶ୍ୟକ ସ୍ପଷ୍ଟ ସଂଖ୍ୟାଗରିଷ୍ଠତା ନଥାଏ, ତା'ହେଲେ ରାଷ୍ଟ୍ରପତି ବୃହତ୍ତମ ଦଳ ବା ମେଣ୍ଟର ନେତାଙ୍କୁ ସରକାର ଗଠନ ଲାଗି ନିମନ୍ତ୍ରଣ କରି ପାରିବେ ନାହିଁ । ଏପରିକି କୌଣସି ପ୍ରଧାନମନ୍ତ୍ରୀ ସଂଖ୍ୟାଗରିଷ୍ଠତା ହରାଇଲେ ବି ରାଷ୍ଟ୍ରପତି ତାଙ୍କୁ ଲୋକସଭାରେ ସମର୍ଥନ ପ୍ରମାଣ କରିବାର ନିର୍ଦ୍ଦେଶ ଦେଇ ପାରିବେ ନାହିଁ । ଦଳୀୟ ବ୍ୟବସ୍ଥା ହୋଇ ପଡ଼ିବ ଅପ୍ରାସଙ୍ଗିକ, ସୁବିଧାବାଦୀ ଘୋଡ଼ା ବେପାରୀମାନେ ନେତା ନିର୍ବାଚ଼ନ ପ୍ରକ୍ରିୟା ନିୟନ୍ତ୍ରଣ କରିବେ । ଯେଉଁ ସଂସଦୀୟ ଗଣତାନ୍ତ୍ରିକ ବ୍ୟବସ୍ଥା ସହିତ ଆମେ ପରିଚ଼ିତ, ଏହି ପ୍ରସ୍ତାବ କାର୍ଯ୍ୟକାରୀ ହେଲେ ତା'ର ଅବସାନ ଘଟିବ ।

ପ୍ରସ୍ତାବରେ ଅନାସ୍ଥା ପ୍ରସ୍ତାବ ଆଗତ କରିବାର ବିଷୟଟିକୁ ଆହୁରି କଠିନ କରିବା କଥା କୁହାଯାଇଛି । ବସ୍ତୁତଃ, କୌଣସି ସରକାର ଲୋକ ସଭାରେ ସଂଖ୍ୟାଗରିଷ୍ଠତା ହରାଇଲେ ବି ଯେପରି ତାକୁ ବଞ୍ଚାଇ ରଖାଯାଏ ସେହି ବ୍ୟବସ୍ଥା ଗ୍ରହଣ କରିବାକୁ କୁହାଯାଇଛି ।

ସେଥିଲାଗି ପ୍ରସ୍ତାବ ଦିଆଯାଇଛି, ଲୋକ ସଭାରେ ଅନାସ୍ଥା ପ୍ରସ୍ତାବ ଆଣିବାକୁ ହେଲେ ସଂସଦର ନିମ୍ନ କକ୍ଷର ଅନ୍ତତଃ ୨୦ ଶତାଂଶ ସଦସ୍ୟଙ୍କର ସ୍ୱାକ୍ଷର ଆବଶ୍ୟକ, ଯାହା ବର୍ତ୍ତମାନର ବ୍ୟବସ୍ଥା ତୁଳନାରେ ଦୁଇଗୁଣରୁ ବି ବେଶି । ଆହୁରି କୁହାଯାଇଛି ଯେ ଅନାସ୍ଥା ପ୍ରସ୍ତାବ ସହିତ ବିକଳ୍ପ ନେତାଙ୍କ ନାମର ପ୍ରସ୍ତାବ ମଧ ଜମା ଦେବାକୁ ହେବ ଏବଂ ଦୁଇଟି ଯାକ ପ୍ରସ୍ତାବ ଉପରେ ଏକ ସଂଗରେ ଭୋଟ ନିଆଯିବ । ଏହି ପ୍ରସ୍ତାବକୁ ହାଲୁକା ଭାବେ ଦେଖିଲେ ଭୁଲ୍ ହେବ । କାରଣ ଏହା ସାଂଗରେ ରାଜନୈତିକ ଦଳଗୁଡ଼ିକୁ ମାର୍କିନୀ ଢାଞ୍ଚାରେ "ନେତୃତ୍ୱ ବାଛିବା" ପାଇଁ ହାସ୍ୟାସ୍ପଦ ପରାମର୍ଶ ଦିଆଯାଇଛି । ଏହା ଦ୍ୱାରା କୁଆଡ଼େ ଜନସାଧାରଣ ଆଗରୁ ପ୍ରଧାନମନ୍ତ୍ରୀ ପଦର ସମ୍ଭାବ୍ୟ ପ୍ରାର୍ଥୀମାନଙ୍କ ସଂପର୍କରେ ଜାଣିପାରିବେ । ଅସଲ କଥା ହେଲା, ଏପରି ଭାବରେ ରାଷ୍ଟ୍ରପତି ପ୍ରଧାନ ଶାସନର ନେତାର ଅବଧାରଣାକୁ ଚାଲୁ କରିବା ଲାଗି ଚେଷ୍ଟା କରାଯାଇଛି ।

## ଲୋକଙ୍କ ପ୍ରତି ଗଭୀର ସନ୍ଦେହ

ସଂବିଧାନ ପର୍ଯ୍ୟାଲୋଚନା କମିଶନରେ ଯେଉଁମାନେ ରହିଛନ୍ତି, ଗଣତନ୍ତ୍ରରେ ଜନଗଣଙ୍କର ଭୂମିକା ସଂପର୍କରେ ସେମାନେ ବୋଧହୁଏ ଗଭୀର ଭାବେ ସନ୍ଦିହାନ । ତେଣୁ ସେମାନେ ଚାହାନ୍ତି, ଏପରି ଆଇନ୍ ପ୍ରଣୟନ କରାଯାଉ, ଯାହା "ସମାବେଶ, ବଡ଼ ଧରଣର ବିକ୍ଷୋଭ ଓ ପ୍ରତବାଦ ସଂଗଠିତ କରିବା କ୍ଷେତ୍ରରେ ରାଜନୈତିକ ଦଳଗୁଡିକର ଖର୍ଚ୍ଚର ସୀମା ବାନ୍ଧି ଦେବ ।" କମିଶନ୍‌ର ମତରେ, "ଉନ୍ନତ ପ୍ରଯୁକ୍ତିର ବୈଦ୍ୟୁତିନ୍ ପ୍ରଚାରର ବର୍ତ୍ତମାନ ଯୁଗରେ ଏଗୁଡ଼ିକର କୌଣସି କାର୍ଯ୍ୟକାରୀ ଭୂମିକା ନାହିଁ କହିଲେ ଚଳେ । ବରଂ ବେଦ୍ୟୁତିନ୍ ପ୍ରଚାର ବ୍ୟବସ୍ଥା ଅନେକ ବେଶି ଫଳପ୍ରଦ ଓ କମ୍ ବ୍ୟୟସାପେକ୍ଷ । ରାଜଧାନୀ ସହରଗୁଡିକରେ ଘନ ଘନ ବଡ଼ ସମାବେଶ ଓ ପ୍ରତିବାଦ ତୁଳନାରେ ବୈଦ୍ୟୁତିନ୍ ପ୍ରଚାର ଜନସାଧାରଣଙ୍କୁ ମଧ କମ ଅସୁବିଧାରେ ପକାଏ ।"

ସ୍ୱାଧୀନତା ସଂଗ୍ରାମର ଦିନଗୁଡ଼ିକରେ ବ୍ୟାପକ ଗଣସମାବେଶ ଯଦି ସଂଗଠିତ ହୋଇ ନଥାଆନ୍ତା, ମଣିଷ ଯଦି ଲଗାତର ଭାବେ ବଡ଼ ଧରଣର ପ୍ରତିବାଦରେ ସାମିଲ ହୋଇ ନଥାଆନ୍ତେ, ତା'ହେଲେ ଆଜି ଏସବୁ ଜ୍ଞାନୀ ବ୍ୟକ୍ତିମାନେ ସ୍ୱାଧୀନ ଭାରତର ସମ୍ବିଧାନ ସଂପର୍କରେ ଆଲୋଚନାର ବି ସୁଯୋଗ ପାଇ ନଥାନ୍ତେ । ବ୍ୟାପକ ଅଂଶର ମଣିଷଙ୍କୁ ସମବେତ କରିବାର ରାସ୍ତାରୁ ହଟିଯାଇ ରାଜନୈତିକ ଦଳଗୁଡ଼ିକୁ ବୃହତ୍ ବ୍ୟବସାୟୀମାନଙ୍କ ଦ୍ୱାରା ପରିଚାଳିତ ଟେଲିଭିଜନ୍ ଚାନେଲ ଏବଂ ସରକାରୀ ପ୍ରଚାର ମାଧମ ଉପରେ ନିର୍ଭର କରିବା ପାଇଁ କହିବାର

ପ୍ରସ୍ତାବ ସେହିମାନେ ହିଁ ମାନି ପାରନ୍ତି, ଯାହାଙ୍କର ସାଧାରଣ ଲୋକଙ୍କ ନିକଟକୁ ନଯାଇ ବି ନିର୍ବାଚନକୁ ପ୍ରଭାବିତ କରିବା ପରି ପ୍ରଚୁର ଅର୍ଥ ଓ ସଂପଦ ଅଛି ।

ଏତିକି ନୁହେଁ । କମିଶନ୍ 'ନିରକ୍ଷର' ନାଗରିକମାନଙ୍କୁ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବାକୁ ଦେବାକୁ ରାଜି ନୁହେଁ । କମିଶନ୍ ଚାହେଁ, ଯେଉଁମାନେ ନିର୍ବାଚନରେ ପ୍ରାର୍ଥୀ ହେବେ ସେମାନେ ଯେପରି ପଢ଼ିବା, ଲେଖିବା ଓ ସାଂବିଧାନିକ ଧାରା ଅନୁଧାବନ କରିବାକୁ ସକ୍ଷମ ହୁଅନ୍ତି । ଆମ ଦେଶର ଶାସକ ଶ୍ରେଣୀଗୁଡ଼ିକୁ ଧନ୍ୟବାଦ ନଦେଇ ରହି ହେଉ ନାହିଁ । ଆଜି ବି ଆମ ଦେଶର ୪୦ ଶତାଂଶରୁ ବି ବେଶି ଲୋକ ଲେଖା ପଢ଼ା ଜାଣନ୍ତି ନାହିଁ । ଭାରତୀୟ ରାଷ୍ଟ୍ରର ଏହି ବ୍ୟର୍ଥତା ପାଇଁ ଏହି ସବୁ ନିରକ୍ଷର ଲୋକଙ୍କୁ ହିଁ ତ ଶାସ୍ତି ଦେବା ଉଚିତ୍, ନା କ'ଣ ? ଆମେ କୃତଜ୍ଞତା ପ୍ରକାଶ କରିବା ଉଚିତ୍ ଏଥିପାଇଁ ଯେ, କମିଶନ୍‌ର ପ୍ରସ୍ତାବରେ ଭୋଟାଧିକାର ପ୍ରୟୋଗ ନିମନ୍ତେ ସଂପତ୍ତିର ମାପକାଠି କଥା କୁହା ଯାଇନାହିଁ ।

## ଅସ୍ଥିରତାର ଅନ୍ତର୍ନିହିତ ଭୀତି

'ଅସ୍ଥିରତା' ଶବ୍ଦଟି ଆମ ଦେଶର ଶାସକ ଶ୍ରେଣୀଗୁଡ଼ିକ ପାଇଁ ଭୟର ପ୍ରଧାନ କାରଣ ହୋଇ ଠିଆ ହୋଇଛି । ପ୍ରକୃତରେ ଅସ୍ଥିରତାର ମୂଳ କାରଣ ହେଲା ପୁଞ୍ଜିପତି-ଜମିଦାର ସ୍ୱାର୍ଥରକ୍ଷା ନୀତି । କିନ୍ତୁ ତା'କୁ ବିଚାର କରିବା ପରିବର୍ତ୍ତେ ଶାସକ ଶ୍ରେଣୀମାନେ ରାଜନୀତିରେ ଜନଗଣଙ୍କର ଅଂଶଗ୍ରହଣ ଓ ଗଣତନ୍ତ୍ରକୁ ସଂକୁଚିତ କରିବାକୁ ଚାହାନ୍ତି, ଯଦ୍ୱାରା ଉଦାରୀକରଣ ଓ ବିଦେଶୀ ବିନିଯୋଗକାରୀଙ୍କର ଚାହିଦାର ସ୍ଥିତିଶୀଳତାକୁ ସୁନିଶ୍ଚିତ କରି ହେବ । କେହି କେହି ଦୁଇ ଦଳୀୟ ବ୍ୟବସ୍ଥା ଚାଲୁ କରିବା କଥା ଯାହା କହୁଛନ୍ତି ତାହା ଏହି 'ସ୍ଥିତିଶୀଳତା'ର ବ୍ୟବସ୍ଥାକୁ ପକ୍କା କରିବା ପାଇଁ ଉଦ୍ଦିଷ୍ଟ । ଏହାଛଡ଼ା ଅନ୍ତତଃ ଦଶ ଶତାଂଶ ଭୋଟ ପାଇଲେ ଗୋଟିଏ ରାଜନୈତିକ ଦଳକୁ ଜାତୀୟ ଦଳର ମର୍ଯ୍ୟାଦା ଦିଆଯାଉ ବୋଲି ପ୍ରସ୍ତାବ ଦିଆଯାଇଛି । ଏପରି ହେଲେ ଏବେ କେବଳ ମାତ୍ର ବି.ଜେ.ପି ଏବଂ କଂଗ୍ରେସ ଏହି ମର୍ଯ୍ୟାଦା ପାଇବେ ।

## ସାଂପ୍ରଦାୟିକତାକୁ ଘଣ୍ଟ ଘୋଡ଼େଇବା

କମିଶନ୍ ପକ୍ଷରୁ ପ୍ରକାଶିତ ନିର୍ବାଚନ ଓ ରାଜନୈତିକ ବ୍ୟବସ୍ଥାର ସଂସ୍କାର ପ୍ରସ୍ତାବରେ ରକ୍ଷଣଶୀଳତାର ଆଭାସ ରହିଛି ଏବଂ ଶାସକ ଅଭିଜାତ ଶ୍ରେଣୀର ଉଦ୍‌ବେଗର ପ୍ରତିଫଳନ ଘଟିଛି । ସେହିପରି ସାଂପ୍ରଦାୟିକତା ଓ ଜାତିଆଣଭାବ ଯେପରି ଭାବେ ଦେଶର ରାଜନୈତିକ ବ୍ୟବସ୍ଥାକୁ ଆଘାତ କରି ଚାଲିଛି, ପ୍ରସ୍ତାବରେ ତା'ର ଉଲ୍ଲେଖ ରୀତିମତ ହତାଶାଜନକ ଓ କଳଙ୍କମୟ । ପ୍ରସ୍ତାବର ଏହି ଅଂଶରେ ବି.ଜେ.ପି.ର ହାତ ସ୍ପଷ୍ଟ । ସାଂପ୍ରଦାୟିକତା ବୃଦ୍ଧି ସଂପର୍କରେ ପ୍ରସ୍ତାବରେ କୁହାଯାଇଛି, '' ସଂବିଧାନରେ ଧର୍ମନିରପେକ୍ଷତାର ନୀତିକୁ ଗ୍ରହଣ କରା ଗଲେ ବି

ଆଶ୍ଚର୍ଯ୍ୟଜନକ ଭାବେ ସଂବିଧାନ ସାଂପ୍ରଦାୟିକ ଦଳକୁ ନିର୍ବାଚନରେ ଲଢ଼ିବାର ଅନୁମତି ଦେଇଛି । ଏବେ ଦେଖା ଯାଉଛି, ଭାରତୀୟ ରାଜନୀତିରେ ସାଂପ୍ରଦାୟିକତା ଓ ମୌଳବାଦର ଝୁଙ୍କ୍ ଉତ୍ତରୋତ୍ତର ବଢ଼ିଚାଲିଛି ! ଗୋଟିଏ 'ଧର୍ମନିରପେକ୍ଷ' ସମାଜ ପାଇଁ ଜରୁରୀ ଆବଶ୍ୟକତା ସହିଷ୍ଣୁତା । ଅଥଚ ଏହି ସହିଷ୍ଣୁତା ଭାରତର ରାଜନୀତିରୁ ସଂପୂର୍ଣ୍ଣ ଅବଲୁପ୍ତ ହୋଇ ଯାଇଛି । ନିର୍ବାଚନୀ ରାଜନୀତି ଓ ଭୋଟ ବାକ୍ସର ସ୍ୱାର୍ଥରେ ପ୍ରତିଟି ରାଜନୈତିକ ଦଳ ଗୋପନରେ ସାଂପ୍ରଦାୟିକତାର ପଥ ଅନୁସରଣ କରୁଛନ୍ତି । ଏହା ଫଳରେ ଧର୍ମନିରପେକ୍ଷତା ପରିଣତ ହୋଇଛି 'ଛଦ୍ମ- ଧର୍ମନିରପେକ୍ଷତା' ବା 'ସଂଖ୍ୟାଲଘୁ ତୋଷଣ'ରେ । ଗତ ଦଶକରେ ଜାତୀୟ ଓ ରାଜ୍ୟ ରାଜନୀତିର ଧାରା ତଥାକଥିତ 'ଧର୍ମନିରପେକ୍ଷ' ଓ 'ସାଂପ୍ରଦାୟିକ' ମାନଙ୍କ ମଧ୍ୟରେ ସଂଘର୍ଷ ଓ ବିରୋଧକୁ ନୀରବରେ ପ୍ରତ୍ୟକ୍ଷ କରିଛି ।''

ଅର୍ଥାତ୍ କମିଶନ୍‌ର ମତରେ, ସାଂପ୍ରଦାୟିକତାର ପରିଣାମରେ 'ଛଦ୍ମ-ଧର୍ମନିରପେକ୍ଷତା' ଓ 'ସଂଖ୍ୟାଲଘୁ ତୋଷଣ'ର ଉତ୍‌ଥାନ ଘଟିଛି । ତଥାକଥିତ ଧର୍ମନିରପେକ୍ଷ ଓ ସାଂପ୍ରଦାୟିକ ଶକ୍ତି ମଧ୍ୟରେ ସଂଘର୍ଷ ଓ ବିରୋଧ କଥା କହି ସାଂପ୍ରଦାୟିକତାର ବିପଦକୁ କାର୍ଯ୍ୟତ ଖାରଜ୍ କରି ଦିଆଯାଇଛି । ଆର.ଏସ.ଏସ. ମୁଖପତ୍ର 'ଦି ଅର୍ଗାନାଇଜର୍' ପତ୍ରିକାର ଯେ କୌଣସି ପୃଷ୍ଠା ଖୋଲିଲେ ହିଁ ଏହି ବିଶ୍ଳେଷଣ ମିଳି ଯିବ । ଏପରିକି ଆର୍.ଏସ୍.ଏସ୍‌ର ଯେ କୌଣସି ପ୍ରଚାରକ ଏହି ଦୃଷ୍ଟିଭଙ୍ଗୀ ହିଁ ବ୍ୟାଖ୍ୟା କରିଥାଆନ୍ତି ।

ଗତ ଦଶକରେ ଆମେ ସାଂପ୍ରଦାୟିକତାର ଉତ୍‌ଥାନକୁ ଯେପରି ପ୍ରତ୍ୟକ୍ଷ କରିଛୁ, ସେହିପରି ରାଜନୈତିକ ସ୍ୱାର୍ଥରେ ଧର୍ମୀୟ ବିଷୟକୁ ନିର୍ଲଜ୍ଜ ଭାବେ ବ୍ୟବହାର କରିବା ମଧ୍ୟ ଦେଖୁଛୁ । ଆଡଭାଣୀଙ୍କର 'ରଥ ଯାତ୍ରା' କିମ୍ବା ହିଂସ୍ର ଆକ୍ରମଣ ଚଳାଇ ବାବରି ମସ୍‌ଜିଦ୍ ଧ୍ୱଂସ କରିବାର ପଦକ୍ଷେପ ତା'ର ଉଦାହରଣ । ଧର୍ମର ନିନ୍ଦନୀୟ ବ୍ୟବହାର ଏବଂ ସଂଖ୍ୟାଲଘୁଙ୍କ ଉପରେ କ୍ରମବର୍ଦ୍ଧମାନ ଆକ୍ରମଣ ମଧ୍ୟ ଜନଗଣଙ୍କର ଅଭିଜ୍ଞତା ମଧ୍ୟରେ ରହିଛି । ସେ ସବୁକୁ କମିଶନ୍‌ର ପ୍ରସ୍ତାବରେ ତଥାକଥିତ ଧର୍ମନିରପେକ୍ଷ ଓ ସାଂପ୍ରଦାୟିକ ଶକ୍ତିମାନଙ୍କ ମଧ୍ୟରେ ସଂଘର୍ଷ ଓ ବିରୋଧ ବୋଲି ଅଭିହିତ କରି ବସ୍ତୁତଃ ସାଂପ୍ରଦାୟିକତାବାଦର ବିପଦକୁ ଖାରଜ କରା ଯାଇଛି ।

## ସଂଖ୍ୟାଲଘୁ - ବିରୋଧୀ ଅବସ୍ଥାନ

ମଣ୍ଡଳ କମିଶନ୍ ସୁପାରିଶ ନେଇ ଯେତେବେଳେ ଦେଶର ବିଭିନ୍ନ ପ୍ରାନ୍ତରେ ବିକ୍ଷୋଭ ପ୍ରଦର୍ଶନ ହେଉଥିଲା, ସେତେବେଳେ ହିନ୍ଦୁ ସାଂପ୍ରଦାୟିକ ଶକ୍ତିଗୁଡ଼ିକର ବକ୍ତବ୍ୟ ଥିଲା, ନିଚ୍ଚ ଜାତିକୁ ପ୍ରଶ୍ରୟ ଦେବାର ପଦକ୍ଷେପ ସମାଜରେ ସାଂପ୍ରଦାୟିକତାଠାରୁ ମଧ୍ୟ ଅଧିକ ବିପଜ୍ଜନକ । ଏବେ ସମ୍ବିଧାନ ସମୀକ୍ଷା କମିଶନ୍ ରୀତିମତ ସମାଲୋଚନାର ସ୍ୱରରେ କହୁଛି, କିଛି ରାଜନୀତିକ ଅଛନ୍ତି, ଯେଉଁମାନେ ''ଅମଲାତନ୍ତ୍ର, ପୁଲିସ୍ ଓ ଅର୍ଦ୍ଧ-ସାମରିକ ବାହିନୀରେ ସଂଖ୍ୟାଲଘୁଙ୍କର 'ନ୍ୟାଯ୍ୟ' ପ୍ରତିନିଧିତ୍ୱର ଦାବି ଜଣାଇ ବସିଛନ୍ତି । '' କମିଶନ୍‌ର ଯେଉଁ ସଦସ୍ୟମାନେ ଏହି ତାର୍କିକ ମନ୍ତବ୍ୟ

କହିଛନ୍ତି, ସେମାନେ ସମ୍ଭବତଃ ଜାଣନ୍ତି ନାହିଁ ଯେ, ଆମ ଦେଶରେ ଉଚ୍ଚ ଶିକ୍ଷାରେ ପ୍ରବେଶକାରୀଙ୍କ ମଧ୍ୟରେ ମୁସଲିମମାନଙ୍କର ହାର ୪ ଶତାଂଶରୁ ବି କମ୍ ଏବଂ ପ୍ରଶାସନରେ ସେମାନଙ୍କର ପ୍ରତିନିଧିତ୍ୱର ହାର ଆନୁପାତିକ ହାରଠୁ କମ୍ । ଆର୍.ଏସ୍.ଏସ୍ - ବି.ଜେ.ପି ମେଣ୍ଟ ପ୍ରତି ପକ୍ଷପାତିତ୍ୱ ଦେଖାଇବା ଲୋକଙ୍କ କମିଶନ୍ ମଧ୍ୟରେ କେତେ ନିଷ୍ଠାବାନ୍ । ଏସବୁ ପ୍ରସ୍ତାବ ଲିପିବଦ୍ଧ କରିବା ପାଇଁ କମିଶନ୍ ଅନେକ ପ୍ୟାନେଲ୍ ଗଠନ କରିଥିଲେ । କେଉଁମାନଙ୍କୁ ନେଇ ଏହି ପ୍ୟାନେଲ୍ ଗଠନ କରାଯାଇଥିଲା କିଏ ଜାଣେ ?

କାହିଁକି ଏପରି କହିବାକୁ ପଡୁଛି ? କାରଣ, କିପରି ଭାବେ ଏସବୁ ପ୍ରସ୍ତାବ ପ୍ରସ୍ତୁତ କରାଯାଇଛି, ତା' ପଛରେ ରୀତିମତ ରହସ୍ୟ ରହିଛି । କେରଳର ପ୍ରଖ୍ୟାତ୍ ଶିକ୍ଷାବିଦ୍ ଡକ୍ଟର ସୁକୁମାର ଆଜିକୋଡ୍ କମିଶନ୍‌ର ଗୋଟିଏ ପାନେଲ୍‌ର ସଦସ୍ୟ ଥିଲେ । କିନ୍ତୁ କିଛି ଦିନ ପୂର୍ବେ ସେ ଇସ୍ତଫା ଦେଇଛନ୍ତି । ସେଥି ସଙ୍ଗେ ସଙ୍ଗେ ସେ କହିଛନ୍ତି, ପାନେଲ୍‌ର ଗୋଟିଏ ବି ବୈଠକକୁ ତାଙ୍କୁ ଡ଼କା ଯାଇନାହିଁ । କିପରି ଭାବେ ଏସବୁ ପ୍ରସ୍ତାବର ଖସଡ଼ା ଠିକ୍ କରାଯାଇଛି, ତା' ବି ସେ ଜାଣନ୍ତି ନାହିଁ ।

ଅନେକ ଆଇନ୍ ବିଶେଷଜ୍ଞ ଏବଂ ବିଶିଷ୍ଟ ବ୍ୟକ୍ତି କମିଶନ୍ କାର୍ଯ୍ୟରେ ଅଂଶ ଗ୍ରହଣ କରିବାକୁ ଇଚ୍ଛୁକ ଥିଲେ । କାରଣ, ସେମାନେ ଭାବିଥିଲେ, ସମ୍ବିଧାନ ସଂସ୍କାର ପାଇଁ ଆନ୍ତରିକ ପ୍ରଚେଷ୍ଟାରୁ ହିଁ ଏହି କମିଶନ୍ ଗଠନ କରାଯାଇଛି । ଆମେ ଆଗରୁ ହିଁ ଏ କଥା କହି ସତର୍କ କରିଛୁ ଯେ, କମିଶନ୍‌ର କାର୍ଯ୍ୟକୁ ବୈଧତା ଦେଲା ପରି କୌଣସି କାର୍ଯ୍ୟ କରିବା ଉଚିତ୍ ନୁହେଁ । ବରଂ ଏହି କମିଶନ୍ ଆର୍.ଏସ୍.ଏସ୍ -ବି.ଜେ.ପି ଶିବିରର ଅନୁଗାମୀ ସୁଭାଷ କାଶ୍ୟପ ଏବଂ ଷ୍ଟେଟ୍‌ସ୍‌ମ୍ୟାନ୍ ପତ୍ରିକାର ସଂପାଦକ ସି.ଆର୍.ଇରାନିଙ୍କର ମୃଗୟାକ୍ଷେତ୍ର ହିସାବରେ ଆଉ । ଏହି ଇରାନି ମହାଶୟ ସଂପ୍ରତି କହିଛନ୍ତି, ପଶ୍ଚିମ ବଂଗରେ 'ଶାନ୍ତି ଫେରାଇ ଆଣିବାକୁ ଏବଂ ସି.ପି.ଆଇ(ଏମ୍) ହାତରୁ ଏହି ରାଜ୍ୟକୁ ମୁକ୍ତ କରିବାକୁ ବାମଫ୍ରଣ୍ଟ୍ ସରକାରକୁ ବରଖାସ୍ତ କରି ସେଠାକୁ ସୈନ୍ୟବାହିନୀ ପଠାଯାଉ । ନିଶ୍ଚିତ ଭାବେ ସଂବିଧାନ ସମୀକ୍ଷା କମିଶନ୍‌ର ବକ୍ତବ୍ୟରେ ଅଭିଜାତ ରାଜନୀତି ଓ ସାଂପ୍ରଦାୟିକ ଝୁଙ୍କର ସାମ୍ରାଜ୍ୟ ଜଘନ୍ୟତମ ସମନ୍ୱୟର ପ୍ରତିଫଳନ ଘଟିଛି ।

ଗୋଟିଏ ଦୃଷ୍ଟିରୁ ଅବଶ୍ୟ ଭଲ ହୋଇଛି । ଏସବୁ ପ୍ରସ୍ତାବ ମଧ୍ୟ ଦେଇ କମିଶନ୍ ଓ ତା'ର ଅଭ୍ୟନ୍ତରୀଣ କାର୍ଯ୍ୟକଳାପ ଲୋକଙ୍କ ସାମନାରେ ଉନ୍ମୋଚିତ ହୋଇଯାଇଛି । ବାଜପେୟୀ ସରକାରଙ୍କ ଉଦ୍ୟୋଗରେ ସଂବିଧାନର ସମୀକ୍ଷା ସଂପର୍କରେ ଏବେ ବି ଯେଉଁମାନଙ୍କର କିଛିଟା ମୋହ ଅଛି, ସେମାନେ ପୁନର୍ବାର ଚିନ୍ତା ଭାବନା କରିବା ପାଇଁ ବାଧ ହେବେ ।

"ସଂବିଧାନରେ ତାଳି ପକାଅ ନାହିଁ — ରାଷ୍ଟ୍ରପତି"



# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨ | ୨୧ | ଅଧ୍ୟାତ୍ମିକ | ଆଧ୍ୟାତ୍ମିକ |
| ୩ | ୧୩ | ବ୍ୟଯ୍ଯାମ | ବ୍ୟାଯ୍ଯାମ |
| ୫ | ୮ | ଉଭୟରଙ୍କ | ଉଭୟଙ୍କର |
| ୧୩ | ୧୭ | ଜିବା | ଯିବା |
| ୧୪ | ୯ | ବେପାର | ବେପାରୀ |
| ୧୫ | ୨୧ | ମେମିତ | ଯେମିତି |
| ୧୯ | ୨୧ | ସ୍ବଭାବକ | ସ୍ବାଭାବିକ |
| ୨୩ | ୫ | କାରକାର | କାରବାର |
| ୨୪ | ୬ | କନା | ବନା |
| ୨୩ | ୬ | ଅର୍ଥଶାସ୍ତ୍ର ବଦ୍‌ମାନେ | ଅର୍ଥଶାସ୍ତ୍ରବିଦ୍‌ମାନେ |
| ୩୩ | ୧୦ | ଉପସ୍ଥିତ | ବିପର୍ଯ୍ୟସ୍ତ |
| ୩୭ | ୮ | ଇର୍ଷା | ଈର୍ଷା |
| ୩୮ | ୧୯ | କୃତିତ୍ତ୍ଵ | କୃତିତ୍ଵ୍ |

Digitized by srujanika@gmail.com

**ଉତ୍କଳଖଦୀ ମଣ୍ଡଳ ପ୍ରକାଶନ**

| | |
|---|---|
| ସତ୍ୟର ପ୍ରୟୋଗ | ଗାନ୍ଧୀଜୀ |
| ଦିଲ୍ଲୀ ଡାଏରୀ | " |
| ଗୀତା ବୋଧ | " |
| ମଂଗଳ ପ୍ରଭାତ | |
| ବୁନିୟାଦୀ ଶିକ୍ଷା | " |
| ସର୍ବୋଦୟ ସିଦ୍ଧାନ୍ତ | " |
| ଗୀତା ପ୍ରବଚନ | ବିନୋବା |
| ବିନୋବା ବଖୁର | " |
| ଗ୍ରାମରାଜ୍ୟ | " |
| ଅମେ ତୃତୀୟ ଶକ୍ତି | " |
| ରାଷ୍ଟ୍ରୀୟଯୋଜନାର ମୂଳକଥା | " |
| ଭୂଦାନଯଜ୍ଞର ବିଶ୍ୱରୂପ | ଧର୍ମାଧିକାରୀ |
| ଭୂଦାନଯଜ୍ଞର ମର୍ମକଥା | " |
| ସ୍ତ୍ରୀ ପୁରୁଷ ମର୍ଯ୍ୟାଦା | ମଶ୍ରୁୱାଲା |
| ଆଶ୍ରମ ଭଜନାବଳୀ | |
| ଭୂଦାନଯଜ୍ଞ ଦର୍ପଣ | |
| ତରୁଣୀ କନ୍ୟାଙ୍କ ପ୍ରତି | |

Price Rs. 1-25 N.P.